ପ୍ରକାଶକ :
ମାକ୍ ବୁକ୍ସ୍
କଟକ-୧

ପ୍ରଚ୍ଛଦପଟ ଶିଳ୍ପୀ
ଅସୀତ ମୁଖର୍ଜି

ପ୍ରଥମ ମୁଦ୍ରଣ
ମହାବିଷୁବସଂକ୍ରାନ୍ତି
୧୯୭୭

ମୁଦ୍ରାକର
ପରମାର୍ଥୀ ପ୍ରିଣ୍ଟି ଓ୍ୱାର୍କସ, କଟକ-୧

ମୂଲ୍ୟ—[illegible] — ଚାରିଟଙ୍କା ପଚିଶ ପଇସା

# ଉତ୍ସର୍ଗ

"ସେଇ କଠୋର ସ୍ୱପ୍ନ—
ଯାହା ଦିନେ
"କୋଣାର୍କ" ମାଧ୍ୟମରେ
ଲକ୍ଷ୍ମୀଧର,
ସୁରେନ୍ଦ୍ର,
ହୃଦାନନ୍ଦ,
ଓ ରମାକାନ୍ତ
ଆଜି
ମତେ
ଉତ୍ତଳା କରିଥିଲି" ॥

ରାଇଚରଣ



# ମୋ କଥା

କଲେଜ ଛାଡ଼ିବା ଗୋଟିଏ ଯୁଗ ହେଲାଣି । କଲେଜର ଲେକ୍ଚର ଥିଏଟର୍ ଆଉ ଲାବରେଟରୀ ଭିତରେ ଦୀର୍ଘ ନ' ବର୍ଷ କଟିଛି । ଆଜି ସେଇ କଲେଜ ସରହଦ ମାଡ଼ିଲେ ଡର ମାଡ଼ୁଛି । ଗୋଟିଏ ଆତ୍ମଦୈନ୍ୟତାର ଭାବ ଆମ୍ଭାକୁ ଆବୋରି ବସୁଛି । ମନେ ହଉଛି ବୟସ ହୋଇଗଲା । କାହିଁକନା ମୋଠୁଁ ଦେଢ଼ଯୁଗ ତଳର ପିଲାଏ ସେଇ କ୍ୱାଡ୍ରାଙ୍ଗଲ୍ ଓ ପୋର୍ଟିକୋ ଭିତରେ ଏବେ ଚଳଚିତ୍ର, ମାଓପ୍ରାସ, ଆଉ ନାଇଲନ୍ କଥା ଗପୁଛନ୍ତି ।

କଲେଜରେ ନ' ବର୍ଷ ଭିତରେ ଯେଉଁ "ପ୍ରବୃତ୍ତି"ଟି ବଡ଼ ସେରନ୍ତାରେ ବଢ଼ି ଉଠିଥିଲା—ତାହା "ବୃତ୍ତି"ର ନିଗଡ଼ ବନ୍ଧନ ଭିତରେ ଅସହାୟ ହୋଇ ପଡ଼ିଛି । ବୃତ୍ତି ଓ ପ୍ରବୃତ୍ତି ଭିତରେ ଜାଗି ଉଠିଛି ସେଇ ପୌରାଣିକ କଳି ।

ତେବେ ମୋର ଆଶା କରିବା ସ୍ୱାଭାବିକ ଯେ ଯୋଜନା-ଉତ୍ତର କାଳରେ ଜନମଙ୍ଗଳ ସମାଜବାଦୀ ରାଷ୍ଟ୍ରର ସମାଜରେ ବୃତ୍ତି ଓ ପ୍ରବୃତ୍ତିର ଏ ଦ୍ୱନ୍ଦ୍ୱ ଆଉ ରହିବ ନାହିଁ । ମୋ ଆଗର ପିଲାମାନେ ତାଙ୍କ ଜୀବନ କାଳ ଭିତରେ ସେଇ ସୁଫଳ ଭୋଗନ୍ତୁ ।

ଏ ପୁସ୍ତକରେ ଯେଉଁ ପ୍ରବନ୍ଧଗୁଡ଼ିକ ସନ୍ନିବେଶିତ କରାଯାଇଛି ତାହା କୌଣସି ସୁଚିନ୍ତିତ ପରିକଳ୍ପନାର ଫଳ ନୁହେଁ । ୧୯୫୫-୬୫ ମଧ୍ୟରେ ବିଭିନ୍ନ ସମୟର ଲେଖା ସେଗୁଡ଼ିକ । ତହିଁରୁ ଅଧିକାଂଶ 'ସମାଜ' ଓ 'କଳିଙ୍ଗ'ରେ ପ୍ରକାଶ ପାଇଛି ।

ତନ୍ମଧ୍ୟରୁ ବିଜ୍ଞାନ ପ୍ରଚାର ସମିତି, ଓଡ଼ିଶା, କଟକ ଓ ତା'ର କଳାହାଣ୍ଡି ଶାଖା ଏବଂ ସମ୍ବଲପୁର ବିଜ୍ଞାନ ପ୍ରଚାର ସଂସଦରେ କେତେକ ପଠିତ ଓ ଆଲୋଚିତ ହୋଇଛି । ସୁତରାଂ ପ୍ରବନ୍ଧ ଗୁଡ଼ିକରେ କେତେକ ପୁନରାବୃତ୍ତି ରହିଛି, ରହିବା ସ୍ୱାଭାବିକ ।

"ବୈଜ୍ଞାନିକର ସମସ୍ୟା" ଅନେକାଂଶରେ ଆମର ଆଧୁନିକ ସମାଜ ଓ ଜୀବନର ସମସ୍ୟା । ଏହା ସହିତ ନୀତି, ରାଜନୀତି, ଧର୍ମ ଓ ଦର୍ଶନର ପ୍ରଶ୍ନ ରହିଛି । ଧର୍ମ, ଅର୍ଥ, କାମ ଓ ମୋକ୍ଷର ପ୍ରଶ୍ନ ରହିଛି । ନିର୍ବାଣ ଓ ଜୀବନର ପ୍ରଶ୍ନ ରହିଛି । ମୋର ମନେହୁଏଛି—ଯାହା ଆଗରୁ କୁହା ହୋଇ ନେଇ—ଏମିତି ନୂଆ କଥା କିଛି ଏ ବହିରେ ମୁଁ ଅଳ୍ପକିଛି କହିଛି । ତେବେ ଏ କଥା ସତ ଯେ ଓଡ଼ିଆରେ ଏ ଧରଣର ଆଲୋଚନା ନୂତନ ।

ସୁତରାଂ ମୋର ଭରସା ଅଛି ବୈଜ୍ଞାନିକ ଓ ସୁଧୀ ସମାଜରେ ଏହା ଆଦୃତ ହେବ ଏବଂ ପ୍ରବନ୍ଧ ଗୁଡ଼ିକରେ ସୂଚିତ ସମସ୍ୟାଗୁଡ଼ିକ ଉପରେ ନୂତନ ଆଲୋଚନାର ସୂତ୍ରପାତ କରିବ ।

ଗୌରଚରଣ ଦାସ

ତା ୧୪ । ୪ । ୭୬

ବିଷୁବ ସଂକ୍ରାନ୍ତି

# ଋଣସ୍ୱୀକାର

ମୋର ସମ୍ମାନାସ୍ପଦ ଅଧ୍ୟାପକ ଶ୍ରୀ ଗୋକୁଳାନନ୍ଦ ମହାପାତ୍ର ଓ ଶ୍ରୀ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ପୁସ୍ତକର ମୁଖବନ୍ଧ ଲେଖି ଦେଇଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ ।

"ମାକ୍ ବୁକ୍ସ୍" ପୁସ୍ତକ ପ୍ରକାଶର ଭାର ନେଇ ମତେ ବହୁତ ଚିନ୍ତା ଓ ଦାୟିତ୍ୱରୁ ମୁକ୍ତ କରିଛନ୍ତି ।

ବନ୍ଧୁ ଶ୍ରୀ ଲକ୍ଷ୍ମୀଧର ମହାନ୍ତିଙ୍କ ଉତ୍ସାହ ଓ ବନ୍ଧୁ ଶ୍ରୀ ହରିଶ୍ଚନ୍ଦ୍ର ରାୟଙ୍କ ସାହାଯ୍ୟ ବିନା ଏ ବହି ହୁଏତ ବାହାରର ଆଲୋକ ଦେଖି ପାରି ନଥା'ନ୍ତା ।

ଚିତ୍ର ଶିଳ୍ପୀ ବନ୍ଧୁ ଅସୀତ ମୁଖର୍ଜି ପ୍ରଚ୍ଛଦପଟଟି ଆଙ୍କି ଦେଇ ଏବଂ ବନ୍ଧୁ କ୍ଷୀରୋଦ ମହାନ୍ତି ପ୍ରଚ୍ଛଦପଟଟି ବ୍ଲକ କରି ଛପାଇ ଦେଇ ମୋତେ କୃତଜ୍ଞ କରିଛନ୍ତି ।

ଲେଖକ

# ସୂଚୀ

ପୃଷ୍ଠା

## ମୁଖବନ୍ଧ

## ପ୍ରବାହ



## ସମସ୍ୟା





**Dr. G. N, Mahapatra,**
M. Sc, Ph. D, F. I. C.
Department of Chemistry,
Ravenshaw College, Cuttack

ଶ୍ରୀମାନ୍ **ରାଇଚରଣ ଦାସ**ଙ୍କ ଲିଖିତ ପୁସ୍ତକ "ବୈଜ୍ଞାନିକର ସମସ୍ୟା" ପଢ଼ି ଅତ୍ୟନ୍ତ ଆନନ୍ଦିତ ହେଲି । ଲେଖକଙ୍କର ବୋଧହୁଏ ଏହା ସର୍ବପ୍ରଥମ ପୁସ୍ତକ । ଓଡ଼ିଆ ସାହିତ୍ୟରେ ବୈଜ୍ଞାନିକର ସମସ୍ୟା ଏକ ସାର୍ଥକ ସୃଷ୍ଟି । ଆମ ଓଡ଼ିଆ ସାହିତ୍ୟରେ ଲୋକପ୍ରିୟ ବୈଜ୍ଞାନିକ ପୁସ୍ତକ କେତେଗୁଡ଼ିଏ ପ୍ରକାଶ ପାଇ-ଥିଲେହେଁ ଚିନ୍ତାମୂଳକ ବୈଜ୍ଞାନିକ ଲେଖାର ଯଥେଷ୍ଟ ଅଭାବ ପରିଲକ୍ଷିତ ହୁଏ । ବଡ଼ ସୁଖର କଥା, ଓଡ଼ିଆ ସାହିତ୍ୟରେ ସେହି ବିରାଟ ଅଭାବକୁ ଦୂରକରି ଆଜ ଆତ୍ମପ୍ରକାଶ କରୁଛି "ବୈଜ୍ଞାନିକର ସମସ୍ୟା", ଯା'ର ଶୁଦ୍ଧ, ପୂତ ପ୍ରବାହରେ ଆମ ଓଡ଼ିଶାର ଚିନ୍ତାମୂଳକ ପ୍ରବନ୍ଧ ସାହିତ୍ୟ କଅଁଳ ଉଠିବ ।

ଶ୍ରୀମାନ୍ **ରାଇଚରଣ** ବୈଜ୍ଞାନିକ ଲେଖକ ଭାବରେ ନୂଆ ନୁହନ୍ତି । ତାଙ୍କର ବହୁ ଚିନ୍ତାମୂଳକ ଲେଖା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଛି । 'ବିଜ୍ଞାନ'ର ସମସ୍ୟା ନେଇ ସେ ବହୁ ପ୍ରବନ୍ଧ ରଚନା କରିଛନ୍ତି । ବହୁ ପତ୍ରପତ୍ରିକାରେ କିନ୍ତୁ ବର୍ଷିତଳେ କଟକରେ ନୂଆ ହୋଇ ପ୍ରତିଷ୍ଠିତ ହୋଇଥିବା ବିଜ୍ଞାନପ୍ରଚାର ସମିତିର ସଭ୍ୟ ଭାବରେ ଯୋଗଦେଇ ସେ ବହୁ ପ୍ରବନ୍ଧ ସମିତିର ବିଭିନ୍ନ ଅଧିବେଶନରେ ପାଠକରି ସମିତିର ଏକ ସକ୍ରିୟ, ସହଯୋଗୀ ଓ ସୁଲେଖକ ସଭ୍ୟ ଭାବରେ ଖ୍ୟାତି ଅର୍ଜନ କରିଛନ୍ତି ।

ବୈଜ୍ଞାନିକ ଲେଖା ପ୍ରତି ତାଙ୍କର ବିଶେଷ ଆଗ୍ରହ ଓ ଉତ୍ସାହ ତାଙ୍କ ଲେଖା ଉପରେ କମ୍ ପ୍ରଭାବ ପକାଇନି । ସେ ଯେତେବେଳେ

କୌଣସି ପ୍ରବନ୍ଧ ଲେଖିଛନ୍ତି, ପ୍ରବନ୍ଧରେ ସେ ନିଜର ସର୍ବସ୍ୱ ଅଜାଡ଼ି ଦେବାକୁ କୁଣ୍ଠାବୋଧ କରନ୍ତି ନାହିଁ। ସେଥିପାଇଁ ତାଙ୍କ ଲେଖାଗୁଡ଼ିକ ବେଶ୍ ଜୀବନ୍ତ ହୋଇ ଉଠିଛି। ଏହି ପୁସ୍ତକରେ 'ବିଜ୍ଞାନର ରୂପକଥା' ପ୍ରବନ୍ଧଟି ବୈଜ୍ଞାନିକ ଉପନ୍ୟାସ ଉପରେ ଏକ ସାର୍ଥକ ସମାଲୋଚନା। ଲେଖାଟି ବେଶ୍ ସୁନ୍ଦର ଓ ଆକର୍ଷଣୀୟ। 'ସୃଷ୍ଟି ନା ସ୍ରଷ୍ଟା', 'ଆତ୍ମାବାଦ ନା ନିରୀଶ୍ୱରବାଦ', 'ଭାବବାଦ ନା ବସ୍ତୁବାଦ' ଆଦି ପ୍ରବନ୍ଧ ଦ୍ୱନ୍ଦ୍ୱ ମୂଳକ ବିଷୟବସ୍ତୁ ଉପରେ ଲେଖା ହୋଇଥିଲା ଜଣାପଡ଼େ। ଏହିସବୁ ବିଷୟ ଉପରେ ଆଲୋଚନା କଲାବେଳେ ଲେଖକ ବିଜ୍ଞାନର ପ୍ରକୃତ ଉଦ୍ଦେଶ୍ୟ ଓ ଆଦର୍ଶ ନେଇ ନାନାପ୍ରକାର ମନ୍ତବ୍ୟ ଦେଇଛନ୍ତି, ଯାହାକି ପାଠକ ପାଠିକାମାନଙ୍କର ପ୍ରଣିଧାନ ଯୋଗ୍ୟ। ବିଜ୍ଞାନ ପ୍ରକୃତରେ ମଣିଷର ଉପକାର କରୁଛି ନା ମଣିଷ ସମାଜର ଧ୍ୱଂସ ସାଧନ ପାଇଁ ପଥ ପରିଷ୍କାର କରୁଛି ଏହାର ଉପରେ ଚିନ୍ତା କରିବାକୁ ବହୁ ଖାଦ୍ୟ ଯୋଗାଇଛନ୍ତି ଲେଖକ ତାଙ୍କର ଏହି ପୁସ୍ତକଟିରେ।

ମୋଟ ଉପରେ "ବୈଜ୍ଞାନିକର ସମସ୍ୟା" ଏକ ଆଦର୍ଶ ସୃଷ୍ଟି। ମୁକ୍ତକଣ୍ଠରେ ଯେ କେହି ଲେଖକ ସ୍ୱୀକାର କରିବ, ଏଭଳି ଚିନ୍ତା ଉଦ୍ରେକକାରୀ ମୌଳିକ ବୈଜ୍ଞାନିକ ପୁସ୍ତକ ଆମ ପାଖରେ ବିରଳ। ଏହି ଧରଣର ପୁସ୍ତକ ଆମଦେଶର ପାଠକ ପାଠିକାମାନଙ୍କ ପାଖରେ ବେଶ୍ ଆଦୃତ ହେବ ବୋଲି ଆଶା। ଶ୍ରୀମାନ୍ ଦାସଙ୍କ ଲେଖନୀରୁ ଏହିଭଳି ଆହୁରି ବହୁ ପୁସ୍ତକ ଆତ୍ମପ୍ରକାଶ କରୁ, ଏହାହିଁ ମୋର କାମନା। ଇତି।

କଟକ
ତା ୨୫।୧୦।୭୪

ଶ୍ରୀ ଗୋକୁଳାନନ୍ଦ ମହାପାତ୍ର

ଅଧ୍ୟାପକ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ
ଭୂଗୋଳ ବିଭାଗ,
ରେଭେନ୍‌ସା କଲେଜ, କଟକ ।

ବୈଜ୍ଞାନିକ ପ୍ରବନ୍ଧର ସଙ୍କଳନ କ୍ଷେତ୍ରରେ ତରୁଣ ଲେଖକ ଶ୍ରୀଯୁକ୍ତ **ରାଇଚରଣ ଦାସଙ୍କର** 'ବୈଜ୍ଞାନିକର ସମସ୍ୟା ଏକ ସମ୍ପୂର୍ଣ୍ଣ ନୂତନ ପଦକ୍ଷେପ । ଖ୍ରୀଷ୍ଟପୂର୍ବ ୨୫ ଶତାବ୍ଦୀର ବେବିଲୋନଠାରୁ ଆରମ୍ଭ କରି ଖ୍ରୀଷ୍ଟଧର୍ମର ଆବିର୍ଭାବ ପର୍ଯ୍ୟନ୍ତ ବିଜ୍ଞାନର ବିକାଶ ମୁଖ୍ୟତଃ ପର୍ଯ୍ୟବେକ୍ଷଣ(Observation) ଏବଂ ପ୍ରତିଜ୍ଞା (Proposition) ମାଧ୍ୟମରେ ହୋଇଥିଲା । ପୁଣି ମଧ୍ୟ ଯୁଗର ପ୍ରଜ୍ଞାବାଦ (Scholasticism) ଏବଂ ଇଉରୋପର ଅଭ୍ୟୁଦୟ ଯୁଗ (Renaissance Age) ଠାରୁ ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ପରୀକ୍ଷା (Experiment) ଓ ମନନ (Theory) ସ୍ତରରେ ବିଜ୍ଞାନର ପୂର୍ଣ୍ଣବିକାଶ ସାଧିତ ହେଲା । ବୈଜ୍ଞାନିକ ଚିନ୍ତାଧାରାର ଏହି ଯୁଗାନ୍ତକାରୀ ବିବର୍ତ୍ତନର ଏକ ପୂର୍ଣ୍ଣାଙ୍ଗ ବିଶ୍ଳେଷଣ ଶ୍ରୀଯୁକ୍ତ ଦାସ ଅତି ଦକ୍ଷତାର ସହିତ କରିପାରିଛନ୍ତି । ପାଠକ ପାଠିକାମାନଙ୍କ ଆଗରେ ବିଜ୍ଞାନର ଜନ୍ମ ପଞ୍ଜିକାଟିଏ ଉପସ୍ଥାପିତ କରିବା ସଙ୍ଗେ ସଙ୍ଗେ ବିଜ୍ଞାନର ବିଭିନ୍ନ ଦୃଷ୍ଟିକୋଣକୁ ଲେଖକ ଦର୍ଶାଇଛନ୍ତି ଏବଂ ପାଶ୍ଚାତ୍ୟ ବୈଜ୍ଞାନିକ ଓ ଭାରତବର୍ଷର କୌଟିଲ୍ୟ, ବରାହମିହିରଙ୍କର ଚିନ୍ତାଧାରାର ତୁଳନାତ୍ମକ ବିଶ୍ଳେଷଣ ମଧ୍ୟ କରାଯାଇଛି ।

ବିଜ୍ଞାନକ୍ଷେତ୍ରରେ ଯୁଗାନ୍ତକାରୀ ଆବିଷ୍କାର ଓ ଉଦ୍ଭାବନ ସବୁକାଳରେ ସମସାମୟିକ ସମାଜକୁ ପ୍ରଭାବିତ କରି ଆସିଛି । ବିଜ୍ଞାନ ମାନବ ଜୀବନକୁ ଖାଲି ଯେ ସରସ ସୁନ୍ଦର କରିଛି ତା ନୁହେଁ

"ଆଜିର ବିଜ୍ଞାନ ଆମକୁ ଦେଉଛି ଜୀବନର ଏକ ପରିବର୍ତ୍ତିତ ମୂଲ୍ୟ ବୋଧ" । ତେଣୁ "ଆଜିର ବିଜ୍ଞାନ ଆମ ଯୁଗର ସଂସ୍କାର ବା ସ୍ୱଧର୍ମ କହିଲେ ଅତ୍ୟୁକ୍ତି ହେବନାହିଁ ।" କିନ୍ତୁ କାପ୍‌ଲିଙ୍ଗ ବା ଓ୍ୱେଲ୍‌ସଙ୍କର ବୈଜ୍ଞାନିକ ରମ୍ୟବାଦ (Scientific Romanticism) ଭିତରେ ବିଜ୍ଞାନ ଆଜି ସୀମାବଦ୍ଧ ନୁହେଁ । ଶତାବ୍ଦୀ ଶତାବ୍ଦୀ ଧରି ବୈଜ୍ଞାନିକ ଚିନ୍ତାଧାରାର ବହୁ ଉତ୍‌ଥାନ ଓ ପତନ ପରେ ଯେଉଁସବୁ ବୈପ୍ଳବିକ ପରିବର୍ତ୍ତନ ଆସିଛି ତାହାର ସୂଚନା ଏବଂ ବିଜ୍ଞାନର ପ୍ରକୃତ ରୂପ ଆଜି ଆମେ ହକ୍‌ସଲେ, ଅରୱେଲ୍ ଏବଂ ଫରେଷ୍ଟରଙ୍କର ବୈଜ୍ଞାନିକ ବିକଳ୍ପବାଦରୁ ପାଇଥାଉଁ । ଏହି ନୂତନ ରୂପରେଖକୁ ଲକ୍ଷ୍ୟରଖି ବୈଜ୍ଞାନିକ ଶିକ୍ଷାର ପଦ୍ଧତି, ବିଜ୍ଞାନର ସମାଜ ଉପରେ ପ୍ରଭାବ, ଆଜି ଓ କାଲିର ବିଜ୍ଞାନର ସମସ୍ୟା ଓ ତହିଁରେ ବୈଜ୍ଞାନିକର କର୍ତ୍ତବ୍ୟ ଏ ସବୁକୁ ସଂକ୍ଷେପରେ ସରସ ଓ ସରଳ ଭାଷାରେ ପ୍ରକାଶ କରିବାରେ ଲେଖକଙ୍କର ଚେଷ୍ଟା ଅତି ପ୍ରଶଂସନୀୟ । ତାଙ୍କର ଭାଷା ଓ ଶୈଳୀରେ ଏକ ସ୍ପଷ୍ଟ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ ।

'ବିଜ୍ଞାନ ଆଜି ବିପଥଗାମୀ", ବିଜ୍ଞାନ ଆଜି ହୋଇଛି କଳୁଷିତ, ପଂକିଳତା ଭିତରେ ଦେଖା ଦେଇଛି ଏକ ଅନ୍ତସ୍ସଣ ଦ୍ୱନ୍ଦ୍ୱ । ବିଜ୍ଞାନ କ୍ରମେ ଯେପରି ମଣିଷଠାରୁ ଦୂରେଇ ଯାଉଛି ଓ ସାରା ପୃଥିବୀରେ ଆସିଛି ଏକ ନୂତନ "ନିରାଶାବାଦ" । ଏହି ପଥଭ୍ରଷ୍ଟ ବିଜ୍ଞାନର କବଳରୁ ମାନବ ଜାତିର ଭବିଷ୍ୟତକୁ ରକ୍ଷା କରି ଉଚିତ ବୈଜ୍ଞାନିକ-ବୋଧ ଏବଂ ବୈଜ୍ଞାନିକ ଶିକ୍ଷାଦ୍ୱାରା ବିଜ୍ଞାନ ସହିତ ମାନବିକତାର ସଂଯୋଗ ପାଇଁ ଏବଂ ବୈଜ୍ଞାନିକ ଚେତନା, ସଂଯମ ଓ ଅନ୍ତର୍ଦୃଷ୍ଟି ଦ୍ୱାରା ଏକ ବିଶ୍ୱମୈତ୍ରୀ, ଗଣତାନ୍ତ୍ରିକ ସମାଜବାଦ ଓ

ସଦ୍ଭାବସ୍ଥାନର ପ୍ରତିଷ୍ଠା ପାଇଁ ଉଦୀୟମାନ ଲେଖକ "ବୈଜ୍ଞାନିକ ମାନବିକତା'' (Scientific Humanism) ଏବଂ ''ସୃଜନଶୀଳ ବିବର୍ତ୍ତନ'' (Creative Evolution)ର ଯେଉଁ ଧ୍ୱନି ତୋଳିଛନ୍ତି ତାହା ଏ ଦେଶର ଯୁବସମାଜକୁ ଅନୁପ୍ରାଣିତ କରିବ ।

''ବୈଜ୍ଞାନିକର ସମସ୍ୟା''—ଏ ଦେଶର ଅଗଣିତ ପାଠକ ପାଠିକାଙ୍କର ହୃଦୟରେ ବୈଜ୍ଞାନିକ ମାନବିକତାର ପ୍ରବାହ ଛୁଟାଇବ ଏଥିରେ ସନ୍ଦେହ ନାହିଁ ।

କଟକ
ତା ୧-୯-୭୫ } ଶ୍ରୀ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ

# ବିଜ୍ଞାନ ଓ ଶିକ୍ଷା

ଊନବିଂଶ ଶତାବ୍ଦୀର ଶେଷଭାଗଆଡ଼କୁ ବିଜ୍ଞାନ ଜୀବନରେ ଏକ ପରିବର୍ତ୍ତିତ ମୂଲ୍ୟବୋଧ ସ୍ଥାପନ କରିସାରିଥିଲା । ବିଜ୍ଞାନ-କ୍ଷେତ୍ରରେ ବହୁ ଯୁଗାନ୍ତକାରୀ ଆବିଷ୍କାର ଓ ଉଦ୍‌ଭାବନ ହୋଇ ସାରିଥିଲା । ବିଦ୍ୟୁତ୍ ଶକ୍ତିର ଧର୍ମଗୁଡ଼ିକ ଉତ୍ତମରୂପେ ପ୍ରତିପାଦିତ ହୋଇସାରିଥିଲା । ଟେଲିଫୋନ୍, ଟେଲିଗ୍ରାଫ, ରେଡ଼ିଓ ଓ ବେଗମନ୍ତୀ ଯାନ ସକଳଦ୍ୱାରା ମାନବ-ମାନବ ମଧ୍ୟସ୍ଥ ବିଚ୍ଛେଦ ଓ ଦୂରତ୍ୱ ବହୁପରିମାଣରେ ହ୍ରାସ ହୋଇଯାଇଥିଲା । ରୋଗନିଦାନ ଶାସ୍ତ୍ରରେ ବହୁ ତଥ୍ୟ ମଣିଷର ଜ୍ଞାନ ଭଣ୍ଡାରକୁ ଅଳଙ୍କୃତ କରି ଜୀବନର ବହୁ କ୍ଲେଶ ଲାଘବ କରି ପାରୁଥିଲା । ଜୀବାଣୁ ଓ କୀଟ ତତ୍ତ୍ୱ ଏବଂ ଅସ୍ତ୍ରଚିକିତ୍ସାର ବହୁ ଉନ୍ନତି ସାଧିତ ହୋଇଥିଲା । ମନୋବିଜ୍ଞାନରେ ମନୋବିକାର, ଶିଶୁ ମନୋବିଦ୍ୟା, ଅପରାଧ-ପ୍ରବଣତା ଓ ଅସ୍ୱାଭାବୀ ମାନବ ବିଷୟରେ ବହୁ କୌତୂହଳ ତଥ୍ୟ ଜଣା ପଡ଼ିଥିଲା । ହରମୋନ୍, ବୀଜସନ୍ତକରଣ, କଲମି କରିବା ଓ ପ୍ରଜନନ ବିଦ୍ୟାର ପ୍ରସାର ହୋଇ ଉଦ୍ଭିଦ ବିଜ୍ଞାନର ବହୁ ଉନ୍ନତି ସାଧିତ ହୋଇଥିଲା । ରସାୟନ ବିଜ୍ଞାନରେ କାଚଶିଳ୍ପ, ଖଣିଜ ପଦାର୍ଥରୁ ବିଶୁଦ୍ଧ ଧାତୁ ପୃଥକ୍ କରିବାର ଜ୍ଞାନ, ସାବୁନ ଶିଳ୍ପ, ରବର ଶିଳ୍ପ, କୃତ୍ରିମ ଘୃତ ଉତ୍ପାଦନ, କାଗଜ ଶିଳ୍ପ, ରଙ୍ଗ ଶିଳ୍ପ ପ୍ରଭୃତିର ଅଭିବୃଦ୍ଧି ହୋଇଥିଲା । ପ୍ରାକୃତିକ ପାରିପାର୍ଶ୍ୱିକ ଅବସ୍ଥା,

ମୃତ୍ତିକା ପରୀକ୍ଷା, ପ୍ରକୃତି ଗଠନ, ପାଣିପାଗ ଓ ଜଳବାୟୁ ବିଷୟରେ ସମ୍ୟକ ଜ୍ଞାନଲାଭ ହୋଇପାରିଥିଲା । ସାର ବ୍ୟବହାରର ବୈଜ୍ଞାନିକ ସୂତ୍ର, ଉନ୍ନତ ଯନ୍ତ୍ରପାତି ବ୍ୟବହାର, ଉଦ୍ଭିଦର ପରିପୁଷ୍ଟତା, ମୃତ୍ତିକାତତ୍ତ୍ୱ ଓ ମୃତ୍ତିକାଜୀବାଣୁ ତତ୍ତ୍ୱ ପ୍ରଭୃତି ବିଷୟ ମାନବଗୋଚରକୁ ଆସି କୃଷି ବିଜ୍ଞାନରେ ନୂତନ ଯୁଗ ଆନୟନ କରିଥିଲା । ଏହି ସମୟରେ ଶିଳ୍ପକ୍ଷେତ୍ରରେ ମଧ୍ୟ ନୂତନଯୁଗ ପ୍ରଣାଳୀମାନ ବ୍ୟବହାର ହେବାକୁ ଲାଗିଲା । ବୀଜାଣୁତତ୍ତ୍ୱର ଜ୍ଞାନ ଶିଳ୍ପ ଓ କୃଷିରେ ବ୍ୟବହୃତ ହେଉଥିଲା । ଶିଳ୍ପବିପ୍ଳବ ଫଳରେ ଜୀବନଧାରଣ ବହୁପରିମାଣରେ ସମୃଦ୍ଧିମନ୍ତ ହୋଇ ପାରିଲା । ମୋଟ ଉପରେ ବିଜ୍ଞାନ ମାନବ ସମକ୍ଷରେ ଏକ ସୁସ୍ଥ ସମଗ୍ରତାର ଛବି ଆଙ୍କିବାକୁ ସକ୍ଷମ ହେଲା ।

ଏହି ସକଳ ଯାନ୍ତ୍ରିକ ପରିବର୍ତ୍ତନ ଜୀବନଯାତ୍ରାର ସଙ୍କୁଳ ପଥକୁ ନୂତନ ଆଶା, ଆକାଂକ୍ଷା, ଉଦ୍ୟମ ଓ ସୁଖସ୍ୱାଚ୍ଛନ୍ଦ୍ୟରେ ଭରି ଦେଲା । ବହୁ ପୁରାତନ ଅନ୍ଧବିଶ୍ୱାସ, କୁସଂସ୍କାର ଦୂରୀଭୂତ ହେବା-ଦ୍ୱାରା ଜୀବନଯାପନ ପ୍ରଣାଳୀ ସୁଗମ ହୋଇଗଲା । ମଣିଷ ଓ ମଣିଷ ମଧ୍ୟସ୍ଥ ସମ୍ପର୍କ ଅତି ନିବିଡ଼ ହୋଇଗଲା । କାଳ ଓ ପୃଥିବୀର ଦୂରତ୍ୱ ସଙ୍କୁଚିତ ହୋଇ ପଡ଼ିଲା । ଊନବିଂଶ ଶତାବ୍ଦୀର ଶେଷ ଅବଦାନ ରଞ୍ଜନରଶ୍ମିର ଆବିଷ୍କାର ଏବଂ ପରେ ପରେ ତେଜସ୍କ୍ରିୟତାର ଆବିଷ୍କାର ବିଜ୍ଞାନ ରାଜ୍ୟରେ ଦୁଇଟି ଦିଗସ୍ତମ୍ଭରୂପେ ଚିରଦିନ ବିରାଜିବ । ରଞ୍ଜନ-ରଶ୍ମି ସାହାଯ୍ୟରେ ସେଲ୍ୟୁଲୋଜ୍, କେରାଟିନ, ମାଇଓସିନ୍ ପ୍ରଭୃତି ତନ୍ତୁଜାତୀୟ ବସ୍ତୁଗୁଡ଼ିକର ଗଠନପ୍ରଣାଳୀର ଅନୁଶୀଳନୀ ସମ୍ଭବ ହୋଇପାରିଲା । ଫଳରେ ରୋଗନିଦାନର ନୂତନ ପ୍ରଣାଳୀମାନ ଆବିଷ୍କୃତ ହେଲା । କର୍କଟ ରୋଗ ପ୍ରଭୃତି

ଦୁରାରୋଗ୍ୟ ବ୍ୟାଧିଗୁଡ଼ିକର ଚିକିତ୍ସା କେବଳ ରଞ୍ଜନ-ରଶ୍ମି ସାହାଯ୍ୟରେ ସମ୍ଭବ ହେଲା । "ମୁଲର୍" କୃତ୍ରିମ ଉପାୟରେ ଜୀବ ମଧ୍ୟରେ ଆକସ୍ମିକ ପରିବର୍ତ୍ତନ (mutation) ସଙ୍ଘଟନ କରି ପାରିଲେ । ଫଳରେ ଉଦ୍ଭିଦ ବିଦ୍ୟାର ବହୁ ଅଗ୍ରଗତି ସାଧିତ ହେଲା । 'ଲୟୁ' ଓ 'ବ୍ରାଗ' ରଞ୍ଜନ-ରଶ୍ମି ସାହାଯ୍ୟରେ ସ୍ଫଟିକ-ବିନ୍ୟାସ (crystalstructure) ନିରୂପଣ କରିପାରିଲେ । ଫଳରେ ମୃତ୍ତିକା ଓ ବିଭିନ୍ନ ଧାତୁ ଏବଂ ଖଣିଜ ପଦାର୍ଥର ବିଧିବଦ୍ଧ ଅନୁଶୀଳନ ସମ୍ଭବ ହେଲା । ତେଜସ୍କ୍ରିୟ ଭେଦକ-ରଶ୍ମି ସାହାଯ୍ୟରେ ବସ୍ତୁରେ କୃତ୍ରିମ ପରିବର୍ତ୍ତନ ସଙ୍ଘଟିତ ହୋଇପାରିଲା । ଏହି ଉପାୟରେ ବିଜ୍ଞାନ ରାଜ୍ୟରେ ନୂତନ ସମ୍ଭାବନାର କ୍ଷେତ୍ର ପ୍ରସାରିତ ହୋଇଗଲା ।

ଏହି କାଳରେ ବିଜ୍ଞାନ ମାନବ ଜାତିର ଆଶା ଓ ଆକାଂକ୍ଷାର ପ୍ରତୀକ ରୂପେ ଦଣ୍ଡାୟମାନ ହେଲା । ସମସାମୟିକ ସମାଜକୁ ଏହା ବହୁ ପରିମାଣରେ ପ୍ରଭାବିତ କରିଛି । ରୁଡ଼ିୟାର୍ଡ଼ କପ୍‌ଲିଙ୍ଗ (୧) ଓ ଏଚ୍. ଜି. ଓ୍ୱେଲ୍‌ସଙ୍କ (୨) କେତେକ ଲେଖା ଅନୁଧାବନ କଲେ ଏହା ପରିଷ୍କାର ହୋଇଯାଏ । ଏହି ବିଭିନ୍ନ ଲେଖା ମଧ୍ୟରେ ମାନବ ଜାତିର ଏକ ରଙ୍ଗୀନ ଝିଲିମିଲି ଭବିଷ୍ୟତର ଚିତ୍ର ରହିଛି । ମଣିଷ ଜହ୍ନ-ମାମୁଁ ର ଘରକୁ ଯାଇପାରିବ । ଅଦୃଶ୍ୟ ହୋଇ ମନପବନ କଠଉଡ଼ିରେ ବୁଲିପାରିବ । ଭବିଷ୍ୟତ ଓ ଅତୀତ ଯୁଗକୁ ମଧ୍ୟ ଚାଲି ଯାଇପାରିବ । ଏହିପରି ବହୁ ଅସାଧ୍ୟ ସାଧନ କରିପାରିବ । ସାହିତ୍ୟର ରମ୍ୟବାଦୀ ଆନ୍ଦୋଳନ (romantic movement) ପରି ବିଜ୍ଞାନ ରାଜ୍ୟରେ ଏହିପରି ଏକ ରମ୍ୟବାଦୀ ଆନ୍ଦୋଳନର ଆରମ୍ଭ ହେଲା । ପ୍ରକୃତିର ରହସ୍ୟମୟତା ପ୍ରତି ଜିଜ୍ଞାସା, ଅନନ୍ତ ଭବିଷ୍ୟତ ଓ ଅନନ୍ତକାଳ ଉପରେ ଆସ୍ଥା, ନୂତନ ଜୀବନ ଓ ନୂତନ ବିଧାନର ପରୀକ୍ଷା,

ପ୍ରକୃତିର ଛବଳ ଦୃଶ୍ୟରାଜି ପ୍ରତି ଏକ ଗଭୀର ଅଥଚ ଉଦାସୀ ଆସକ୍ତି ଏହି ଆନ୍ଦୋଳନର କେତୋଟି ଲକ୍ଷଣ । ଏହିସବୁ ଭାବରାଜି ଶିକ୍ଷାକ୍ଷେତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିଲା । ପ୍ରତ୍ୟେକ ଜିନିଷକୁ ଦେଖି ତନଖି ଗ୍ରହଣ କରିବା ଏହି ଶିକ୍ଷା ପ୍ରଣାଳୀର କେନ୍ଦ୍ରିକ ଭାବ ଏବଂ ଏହି ଜ୍ଞାନଗୁଡ଼ିକ ଧାରାବାହିକରୂପେ ପରୀକ୍ଷା ସୂତ୍ରେ ପ୍ରୟୋଗ କରି ନୂତନତାର ସନ୍ଧାନ କରିବା ଏହି ପ୍ରଣାଳୀର ଅନ୍ୟତମ ମୂଳ ସତ୍ୟ । ଏହା ଫଳରେ ପ୍ରତ୍ୟେକ କ୍ଷେତ୍ରରେ ବିଧିବଦ୍ଧ ଓ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ, ଆଲୋଚନା ଓ ଅଗ୍ରଗତି ସମ୍ଭବ ହେଲା ।

ବିଂଶ ଶତାବ୍ଦୀରେ ତେଜସ୍କ୍ରିୟତା ଉପରେ ବହୁ ଅଗ୍ରଗତି ସାଧିତ ହୋଇଛି । କ୍ୟୁରି ଦମ୍ପତିଙ୍କ ରେଡ଼ିଅମ୍ ଆବିଷ୍କାର ପରେ ପରେ ପ୍ରାଣୁ (proton) ଓ କ୍ଲୀବାଣୁ (neutron) ର ଆବିଷ୍କାର ହେଲା । ଅଣୁ ଗଠନର ପ୍ରମାଣ ଦୃଢ଼ଭିତ୍ତିରେ ସ୍ଥାପିତ ହେଲା । ପ୍ରାଣୁ ଓ କ୍ଲୀବାଣୁ ଦ୍ୱାରା ଅଣୁକ୍ଷୟ ଓ ଅଣୁରୂପାନ୍ତର ସମ୍ଭବ ହେଲା । ମୌଳିକ ବସ୍ତୁଗୁଡ଼ିକର ତେଜସ୍କ୍ରିୟ ସସ୍ଥାନୀ (radioactive isotope) ଓ ଗୁରୁ ସସ୍ଥାନୀ (heavey isotope) ର ପ୍ରସ୍ତୁତପ୍ରଣାଳୀ ଉଦ୍ଭାବନ ହେଲା । ପରିଶେଷରେ ଇଉରାନିୟମ୍ (nucleus) ର ପତନ ଏବଂ ପରମାଣୁ ଶକ୍ତି ଓ ପରମାଣୁବୋମାର ପ୍ରସ୍ତୁତ ସମ୍ଭବ ହୋଇ ପାରିଲା ।

ପରମାଣୁ ବୋମା ଆଧୁନିକ ସମାଜରେ ଗୁରୁବେଦନା ସୃଷ୍ଟି କରିଛି । ଏହାର ଧ୍ୱଂସକାରୀ ଶକ୍ତିର ପଟାନ୍ତର ନାହିଁ । ପୁରାଣ ବର୍ଣ୍ଣିତ ବ୍ରହ୍ମାସ୍ତ୍ରଠାରୁ ଏହାର ଧ୍ୱଂସଶକ୍ତି ଅଧିକ କହିଲେ ଅତ୍ୟୁକ୍ତି ହେବ ନାହିଁ । ୧୯୪୫ ମସିହାରେ ନାଗାସାକି ଓ ହିରୋସୀମାରେ

ପରମାଣୁ ବୋମା ବିସ୍ଫୋରଣବେଳେ ଯେଉଁ ଖଣ୍ଡପ୍ରଳୟ ସୃଷ୍ଟି ହୋଇଥିଲା, ତାହା ବର୍ଣ୍ଣନାତୀତ । ଏହି ଉଗ୍ର ବିସ୍ଫୋରଣ ଫଳରେ ଦୁଇ ତିନି ମାଇଲ ବ୍ୟାସାର୍ଦ୍ଧ ମଧ୍ୟରେ ଅତି ଭୟଙ୍କର ଧ୍ୱଂସଲୀଳା ସଙ୍ଗଠିତ ହୁଏ । ବିସ୍ଫୋରଣ ସମୟରେ ପ୍ରଚୁର ଉତ୍ତାପ ଉତ୍ପନ୍ନ ହୁଏ । ଏହି ଉତ୍ତାପ ପାରିପାର୍ଶ୍ୱିକ ବାୟୁମଣ୍ଡଳକୁ ୧୦୦୦ରୁ ୧୫୦୦ ଡିଗ୍ରୀ ସେଣ୍ଟିଗ୍ରେଡ଼ ପର୍ଯ୍ୟନ୍ତ ବହୁ ସମୟ ଉତ୍ତପ୍ତ କରି ରଖେ । ଫଳରେ ଲଘୁଚାପ ମଣ୍ଡଳ ସୃଷ୍ଟି ହୋଇ ବହୁ ସମୟ ପର୍ଯ୍ୟନ୍ତ ପ୍ରବଳ ଘୂର୍ଣ୍ଣିବାୟୁ ସୃଷ୍ଟି ହୁଏ ଏବଂ ଜୀବ-ମେଘ ସଞ୍ଚାର ସୂତ୍ରପାତ ହୁଏ । ଏହାଛଡ଼ା ଏହି ବିସ୍ଫୋରଣ ସମୟରେ ପ୍ରଚୁର ତେଜସ୍କ୍ରିୟ ରଶ୍ମି ଉତ୍ପନ୍ନ ହୁଏ । ବିସ୍ଫୋରକ ପଦାର୍ଥମାନଙ୍କ ମଧ୍ୟରେ ବିଭିନ୍ନ ଶୃଙ୍ଖଳ-ପ୍ରତିକ୍ରିୟା chain-reaction) ସୃଷ୍ଟି ହେବା ଫଳରେ ପ୍ରଚୁର ଉତ୍ତାପ ଓ ଶକ୍ତି ବିକୀର୍ଣ୍ଣ ହୁଏ । ସୌରବର୍ଣ୍ଣାଳୀ (Solar spectrum)ର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ସମସ୍ତ ଦୈର୍ଘ୍ୟ ବିଶିଷ୍ଟ ତଡ଼ିତ ଚୁମ୍ବକୀୟ ତରଙ୍ଗ (electromagnetic wave ଏବଂ ଦୀର୍ଘତମ ଉତ୍ତାପ ତରଙ୍ଗ ଓ କ୍ଷୁଦ୍ର ପାରଲୋହିତ ତରଙ୍ଗ (infrared wave ଠାରୁ ଆରମ୍ଭ କରି ପଦାର୍ଥର ଗଭୀରକୁ ଭେଦ କରି ପାରୁଥିବା କ୍ଷୁଦ୍ରତମ ଦୈର୍ଘ୍ୟ ବିଶିଷ୍ଟ "ଗାମା" ରଶ୍ମି ତରଙ୍ଗ ମଧ୍ୟ ନିର୍ଗତ ହୁଏ । ଏହି ରଶ୍ମିଗୁଡ଼ିକର ପ୍ରଭାବ ଅତି ମାରାତ୍ମକ । କିରଣସ୍ନାନ (Irradiation) ଫଳରେ ଏହା ପ୍ରାଣୀର ଜୀବନ୍ତ କୋଷଗୁଡ଼ିକ ସମ୍ପୂର୍ଣ୍ଣ ଧ୍ୱଂସ କରି ଦେଇପାରେ । ପରମାଣୁ ବୋମା ବିସ୍ଫୋରଣ ପରେ ଜାପାନରେ ଏହି ତେଜସ୍କ୍ରିୟ ରଶ୍ମିର ଧ୍ୱଂସକାରୀ ଶକ୍ତି ପ୍ରଭାବରେ ୨ ୦୦ ମିଟର ବ୍ୟାସାର୍ଦ୍ଧ ମଧ୍ୟସ୍ଥ ସକଳ ପ୍ରାଣୀ ମୃତ୍ୟୁମୁଖରେ ପଡ଼ିଥିଲେ । ତା'ର ବାହାରେ ଥିବା ପ୍ରାଣୀମାନଙ୍କର ରକ୍ତଚାପହ୍ରାସ, ମୁଖର ଲାଳଗ୍ରନ୍ଥିରୁ ଲାଳସ୍ରାବ,

ଉଦରାମୟ, ଓଜନହ୍ରାସ, ରକ୍ତପୀଡ଼ା, ଜୀବନୀଶକ୍ତିହ୍ରାସ ପ୍ରଭୃତି ବହୁ ପ୍ରକାର ଓ ବ୍ୟାଧି ଦେଖାଯାଇଥିଲା । ପୁଣି ଏହି ପ୍ରଭାବଗୁଡ଼ିକ ମଣିଷର ପ୍ରଜନନ କ୍ଷମତାକୁ ଗଭୀର ଭାବରେ ପ୍ରଭାବିତ କରିବାର ପ୍ରମାଣ ମିଳୁଛି । ଅନେକ ସ୍ଥଳରେ ଏହା ଗର୍ଭସ୍ଥ ଭ୍ରୂଣ ଉପରେ ନିଜର ପ୍ରଭାବ ବିସ୍ତାର କରୁଛି ଏବଂ ବଂଶଗତ ଗୁଣକୁ ମଧ୍ୟ ପରିବର୍ତ୍ତିତ କରୁଛି ।

ପରମାଣୁ ବୋମାର ଏହି ଶକ୍ତି ସମଗ୍ର ମାନବଜାତି ଆଗରେ ଗୋଟିଏ ନୂଆ ସମସ୍ୟା ଉତ୍ଥାପନ କରୁଛି । ଯୁଗଯୁଗର ପରିଶ୍ରମ ଓ ଉଦ୍ୟମ ଫଳରେ ମାନବ ଯେଉଁ ସଭ୍ୟତା ସୃଷ୍ଟି କରିଛି ତାହା ଆଜି ଅତି ଗଭୀରଭାବେ ବିପନ୍ନ ହୋଇପଡ଼ୁଛି । ବିଜ୍ଞାନୀମାନଙ୍କ ହାତରେ ଆଜି ପରମାଣୁ ବୋମାଠାରୁ ବହୁଗୁଣ ଶକ୍ତିଶାଳୀ ହାଇଡ୍ରୋଜେନ ବୋମାମାନ ପ୍ରସ୍ତୁତ ହେଉଛି । ଏଗୁଡ଼ିକ ବ୍ୟବହାର ହେଲେ ସଭ୍ୟତା କଥା ଛାଡ଼, ସମଗ୍ର ମାନବ ଜାତିର ଅସ୍ତିତ୍ୱ ଧରାପୃଷ୍ଠରୁ ନିଶ୍ଚିହ୍ନ ହୋଇଯିବ । ନିକଟରେ ବିଖ୍ୟାତ ଦାର୍ଶନିକ ବର୍ଟ୍ରାଣ୍ଡରସେଲ ଓ ଆଇନଷ୍ଟାଇନ୍ ପ୍ରଭୃତି କେତେକ ବିଶିଷ୍ଟ ବୈଜ୍ଞାନିକ ପୃଥିବୀର ରାଜନୀତିଜ୍ଞମାନଙ୍କୁ ଗୋଟିଏ ନିବେଦନ ଜଣାଇଥିଲେ । ସେଥିରେ ସେମାନେ ଗୋଟିଏ ପ୍ରଶ୍ନ ଉତ୍ଥାପନ କରିଛନ୍ତି—ମାନବ ଜାତି ଯୁଦ୍ଧକୁ ବର୍ଜନ କରିବ ନା ନାହିଁ । ଯଦି କେବେ ଭବିଷ୍ୟତ ଯୁଦ୍ଧରେ ପରମାଣୁ ଅସ୍ତ୍ର ବିନିଯୋଗ ହୁଏ, ତେବେ ତଦ୍ଦ୍ୱାରା ସମଗ୍ର ମାନବ ସମାଜର ଅବସ୍ଥିତି ଉପରେ ଆଞ୍ଚ ଆସିବ । ଏହା ମଧ୍ୟରେ ବିଜିତ ଓ ବିଜେତାର ପାର୍ଥକ୍ୟ ରହିବ ନାହିଁ । ସୁତରାଂ ପୃଥିବୀର ସମସ୍ତ ସରକାର ବେଳହୁଁ ସାବଧାନ ହୁଅନ୍ତୁ । ସ୍ଥିର କରନ୍ତୁ ମାନବ ସମାଜ ବଞ୍ଚିବ କି ନାହିଁ । ସେମାନେ ପୁଣି କହିଛନ୍ତି—ଆମେ ମଣିଷ ଜାତିକୁ ମଣିଷ ଜାତି ହିସାବରେ

ନିବେଦନ କରୁଛନ୍ତି । ଆପଣମାନେ ମାନବକଲ୍ୟାଣ ବିଷୟରେ ଭାବନ୍ତୁ । ଆଜି ସମସ୍ତ କଥା ପାସୋରିଯାନ୍ତୁ । ଯଦି ତାହା କରି ପାରିବେ, ତେବେ ସୁଖସ୍ୱାଚ୍ଛନ୍ଦ୍ୟର ନୂତନ ସ୍ୱର୍ଗ ଖୋଲିଯିବ, ନଚେତ୍ ସମଗ୍ର ମାନବ ସଭ୍ୟତା ବିଶ୍ୱ ବିଧ୍ୱଂସ ପାଇଯିବ ।

ଏହି ଉକ୍ତିଟି ଉତ୍ତମରୂପେ ପ୍ରଣିଧାନଯୋଗ୍ୟ । ବିଜ୍ଞାନ ଆଜି କ୍ରମେ ଯେପରି ମଣିଷଠାରୁ ଦୂରେଇ ଯାଉଛି । ସମୁଦାୟ ମଣିଷ ସମାଜର ସ୍ୱାର୍ଥକଳ୍ପେ ବିନିଯୋଗ ହେବା ପରିବର୍ତ୍ତେ ଏହା ଆଜି ସମଗ୍ର ମଣିଷ ସମାଜର ସ୍ୱାର୍ଥର ବିରୋଧ କରୁଛି । ଏହା ଫଳରେ ବିଜ୍ଞାନ ଆଜି ପୃଥିବୀରେ ଏକ ନୂତନ ନିରାଶାବାଦ ଆଣିଦେଇଛି । ଯଦି ବିଜ୍ଞାନକୁ ଜଣେ ସେରଲକ ହୋମସ ସହିତ ତୁଳନା କରାଯାଏ, *ତେବେ କୁହାଯିବ ଯେ ଏହି ସେରଲକ ହୋମସ ପ୍ରକୃତିର ଅଜଣା* ଗନ୍ତାଘରର ଦ୍ୱାର ଖୋଲି ଶେଷକୁ ସେହି ପ୍ରାଚୁର୍ଯ୍ୟ ମଧ୍ୟରେ ନିଜର ଅବସ୍ଥିତି ହରାଇବସିଛି । ଆଲିବାବା କାହାଣୀ ପରି ଏହା ପ୍ରକୃତିର ଅନନ୍ତ ସମ୍ଭାର ମଧ୍ୟରେ ପ୍ରବେଶ କରି ମୂଳ (opensesame) ମନ୍ତ୍ରଟିକୁ ଭୁଲିଯାଇ ଦସ୍ୟୁଗୁହାରେ ନିଜେ କାରାରୁଦ୍ଧ ହୋଇପଡ଼ିଛି । ବିଜ୍ଞାନକୁ ଏକ ଲଗାମହୀନ ଘୋଡ଼ା ପରି ନିଜ ମନଇଚ୍ଛା ଛାଡ଼ିଦେବାର ବେଳ ଅବା ବିଳାସ ଆଉ ନାହିଁ । ମାନବ ସମାଜର ମଙ୍ଗଳକଳ୍ପେ ଏହାର ନିୟନ୍ତ୍ରଣ ଆଜି ସର୍ବାଦୌ ସମୀଚୀନ ମନେହୁଏ ।

ବିଜ୍ଞାନ ମଧ୍ୟରେ ଏହି ନିରାଶାବାଦ ଆଜି ବଳବତ୍ତର ହୋଇଛି । କ୍ଷୁଦ୍ର ରାଜନୀତିକ ସ୍ୱାର୍ଥ ଦୃଷ୍ଟେ ବିଜ୍ଞାନକୁ ବିପଥଗାମୀ କରାଇବା ଫଳରେ ଏହାର ସୃଷ୍ଟି । ହକ୍‌ସଲେ (୩), ଜର୍ଜ ଅରୱେଲ (୪) ଓ ଇ, ଏମ୍, ଫରେଷ୍ଟର (୫)ଙ୍କ କେତେକ ପୁସ୍ତକରେ ଏହାର

ଚସ ମିଳେ । ଏହି ପୁସ୍ତକରେ ମନୁଷ୍ୟ ସମାଜକୁ ଗଢ଼ିବା ନିମନ୍ତେ ବିଜ୍ଞାନର ଏକ କଳୁଷିତ ଛବି ଚିତ୍ରିତ ହୋଇଛି । ଏହା ମଣିଷ ସମାଜକୁ ଏକ ନିଗଡ଼ବନ୍ଧନ ମଧ୍ୟରେ ଗୁମ୍ଫିରଖିବାକୁ ଚାହେଁ । ଅଧ୍ୟାପକ ଶ୍ରୀ ଗୋକୁଳାନନ୍ଦ ମହାପାତ୍ରଙ୍କ "ପୃଥିବୀ ବାହାରେ ମଣିଷ" ପୁସ୍ତକରେ ବର୍ଣ୍ଣିତ ହୋଇଥିବା ଗ୍ରହମଣ୍ଡଳମାନଙ୍କର ଅଯଥା ହସ୍ତକ୍ଷେପ ଆଜି ଏକ କ୍ରୂର ସତ୍ୟରୂପେ ପରିଣତ ହୋଇଅଛି । ମଣିଷ ଆଜି ଉଡ଼ନ୍ତା ଥାଳିଆ ଓ ରକେଟ ବିମାନ ଭାବନା ନେଇ ବ୍ୟସ୍ତ । କାରଣ ମଣିଷ ଆଜି ଯେମିତି ଏହି ପୃଥିବୀ ଛାଡ଼ି ଅନ୍ୟ ଗ୍ରହ ଅବା ଉପଗ୍ରହକୁ ପଳାଇଯିବାକୁ ବ୍ୟଗ୍ର । ଏହି ପଳାୟନ ପନ୍ଥା ମନୋବୃତ୍ତି ଆଜି ସମୁଦାୟ ଜଗତରେ ଦେଖିବାକୁ ମିଳୁଛି ।

ମୋଟ ଉପରେ ବିଜ୍ଞାନସହ ମାନବିକତାର ସଂଯୋଗ ଲୋଡ଼ା । ମଣିଷ ସମାଜର ସ୍ୱାର୍ଥକଳ୍ପେ ଏହାର ନିୟନ୍ତ୍ରଣର ଯେ ଆବଶ୍ୟକତା ରହିଛି ଏହାକୁ ସ୍ୱୀକାର କରିବାକୁ ପଡ଼ିବ । ଶିକ୍ଷା କ୍ଷେତ୍ରରେ ଏହି ମନୋବୃତ୍ତିର ଅଭିବୃଦ୍ଧି ଘଟାଇବା ଆଜି ସବୁଠାରୁ ଜରୁରୀ ହୋଇ ପଡ଼ିଛି । ଏହି ସମସ୍ୟାଟିକୁ ରାଜନୀତି ବା ପରସ୍ପର ବିରୋଧାତ୍ମକ ବାଦ (ism)ଠାରୁ ଦୂରେଇ ନିରପେକ୍ଷ ଭାବରେ ବିଚାର କରିବାକୁ ପଡ଼ିବ । ବିଜ୍ଞାନ ଶିକ୍ଷାକୁ ଏହି ମାନବିକତାର ଦୃଷ୍ଟିରୁ ସମୀକ୍ଷା କରିବାକୁ ପଡ଼ିବ ।

ଅପର ପକ୍ଷରେ ମାନବର କଲ୍ୟାଣ ଦୃଷ୍ଟିରୁ ଏହି ପରମାଣୁ ଶକ୍ତି ବିନିଯୋଗର ଅସୀମ ସମ୍ଭାବନା ରହିଛି । ତେଜଷ୍କ୍ରିୟ ସସ୍ଥାନୀ ସାହାଯ୍ୟରେ ବହୁ ନୂତନ ପରୀକ୍ଷା ଓ ପର୍ଯ୍ୟବେକ୍ଷଣ ସମ୍ଭବ ହୋଇଛି । ପ୍ରକୃତିରେ ୮୫ ନମ୍ବର ମୌଳିକ ପଦାର୍ଥ ନାହିଁ । କିନ୍ତୁ ଏହି ୮୫ ନମ୍ବର ମୌଳିକ ପଦାର୍ଥର ତେଜଷ୍କ୍ରିୟ ସସ୍ଥାନୀ କୃତ୍ରିମ ଭାବରେ

ପ୍ରସ୍ତୁତ କରାଯାଇ ତାହାର ଧର୍ମଗୁଡ଼ିକ ଅନୁଶୀଳନ କରାଯାଇଛି । ତେଜସ୍କ୍ରିୟ ସମସ୍ଥାନିଦ୍ୱାରା ବହୁ ଯୌଗିକ ରାସାୟନିକ ପ୍ରକ୍ରିୟା ସମ୍ବନ୍ଧରେ ସମ୍ୟକ ଜ୍ଞାନଲାଭ ହୋଇଛି । ଏହା ସାହାଯ୍ୟରେ ଧରାପୃଷ୍ଠରେ ଥିବା ଖଣିଜ ଦ୍ରବ୍ୟଗୁଡ଼ିକର ବୟସ କଳନା ସମ୍ଭବପର ହୋଇଛି । ଏପରିକି ପୃଥିବୀର ବୟସ ଏଇଥିରୁ ଗଣାଯାଇଛି । ସର୍ବୋପରି ଶକ୍ତି ହିସାବରେ ପରମାଣୁ ଶକ୍ତିର ସମ୍ଭାବନା ବହୁତ । ଋରିକୋଟି ପାଉଣ୍ଡ କୋଇଲା ଦ୍ୱାରା ଯେଉଁ ଶକ୍ତି ଉତ୍ପନ୍ନହୁଏ, ସେହି ପରିମାଣ ଶକ୍ତି ପନ୍ଦର ପାଉଣ୍ଡ ଘନୀଭୂତ ଆଣବିକ ଜାଳେଣିଦ୍ୱାରା ଉତ୍ପନ୍ନ କରାଯାଇପାରେ । ଆଣବିକ ଶକ୍ତି ପୃଥିବୀର କୋଇଲା ସଙ୍କଟର ଭୀତି ଦୂରକରିଛି । କାରଣ ବିଭିନ୍ନ ଶିଳ୍ପ ପ୍ରତିଷ୍ଠାନ ଓ ବୈଜ୍ଞାନିକ ଉପକରଣ ପାଇଁ ଆବଶ୍ୟକ ହେଉଥିବା ବିଦ୍ୟୁତଶକ୍ତି କୋଇଲାରୁହିଁ ଅଣାଯାଉଛି । ଅବଶ୍ୟ ଆଣବିକ ଶକ୍ତି ଉତ୍ପାଦନର ଅର୍ଥନୈତିକ ଦିଗଟି ବର୍ତ୍ତମାନ ସୁଦ୍ଧା ସମାଧାନସାପେକ୍ଷ । ଏହା ହୋଇଗଲେ ଦୂରବର୍ତ୍ତୀ ପର୍ବତ ଉପତ୍ୟକା ମଧ୍ୟସ୍ଥିତ ଗ୍ରାମଗୁଡ଼ିକରେ ଆଲୋକ, ଉତ୍ତାପ ଓ ଅନୁର୍ବର କ୍ଷେତ୍ରରେ ଜଳ ଯୋଗାଯାଇ ପାରିବ । ଏହା ସାହାଯ୍ୟରେ ସାମୁଦ୍ରିକ ଜାହାଜ ଋଲି ପାରିବ । ବ୍ୟୋମଯାନର ଗତିଶକ୍ତି ଅସୀମ ଭାବରେ ବଢ଼ିଯିବ । ଶିଳ୍ପକ୍ଷେତ୍ରରେ ବିଭିନ୍ନ ଉପାୟରେ ଏହା ବ୍ୟବହୃତ ହୋଇପାରିବ । ସଂପ୍ରତି ଶିଳ୍ପ ପଦାର୍ଥ ପରୀକ୍ଷା ଓ ଉନ୍ନତ କରି ଉତ୍ପାଦନର ବୃଦ୍ଧି ଦିଗରେ ତେଜସ୍କ୍ରିୟ ସମସ୍ଥାନିଗୁଡ଼ିକ ନାନା ଉପାୟରେ ପ୍ରୟୋଗ କରାଯାଉଛି । ଝାଳେଇ-କାମରେ ତ୍ରୁଟି ଦର୍ଶାଇଦେବା, ଖାଦ୍ୟଦ୍ରବ୍ୟରୁ ଜୀବାଣୁ ନିଷ୍କାସନ କରିବା, ପାଇପରେ ତେଲ ପ୍ରଭୃତି ପଦାର୍ଥ ଋଳଣ କରିବା, ମଟରଗାଡ଼ି ଟାୟାରର କ୍ଷୟ ପରିମାଣ ସ୍ଥିର କରିବା, ରବର, କାଗଜ ଓ ବସ୍ତ୍ର କାରଖାନା ଶିଳ୍ପର ସହାୟତା କରିବା, ଉଦ୍ଭିଦ୍ଷ୍ଟ

ମଣ୍ଟର ତେଲ, ଉତ୍ତମ ଧରଣର ପ୍ଲାଷ୍ଟିକ, ଆରୋଗ୍ୟକାରୀ ଔଷଧ ଓ ଚିକିତ୍ସା ବିଭାଗୀୟ ଜିନିଷପତ୍ର ଉତ୍ପାଦନ କରିବା ଏସବୁ ଆଣବିକ ଶକ୍ତି ସାହାଯ୍ୟରେ ସମାପନ କରିବା ସମ୍ଭବପର ହୋଇଛି । କୋବାଲଟ୍ ଧାତୁର ତେଜସ୍କ୍ରିୟ ସମସ୍ଥାନୀ ସାହାଯ୍ୟରେ କର୍କଟ ରୋଗର ଆରୋଗ୍ୟ କରାଯାଇ ପାରୁଛି । ତେଜସ୍କ୍ରିୟ ଆଇଓଡ଼ିନ ସମସ୍ଥାନୀ ସାହାଯ୍ୟରେ କଣ୍ଠଦେଶର ଉପାସ୍ଥି କର୍କଟ ରୋଗ ଆରୋଗ୍ୟ କରାଯାଉଛି । ତେଜସ୍କ୍ରିୟ ବୋରନ ସମସ୍ଥାନୀ ସାହାଯ୍ୟରେ ମସ୍ତିଷ୍କର ଟିଉମର ଆରୋଗ୍ୟ କରାଯାଉଛି । ତେଜସ୍କ୍ରିୟ ସମସ୍ଥାନୀଗୁଡ଼ିକ (ଯଥା — ତେଜସ୍କ୍ରିୟ ବେରିଅମ ସମସ୍ଥାନୀ) ସାହାଯ୍ୟରେ ପତଙ୍ଗ ଦେହ ରକ୍ଷା ପକ୍ଷରେ ପ୍ରୟୋଜନୀୟ ଧାତୁ ପଦାର୍ଥର ପରିମାଣ ଲକ୍ଷ୍ୟ କରି ମାନବ ଜୀବନଧାରଣ ମୂଳରେ ଧାତୁ ପଦାର୍ଥର କାର୍ଯ୍ୟକାରିତା ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ଜ୍ଞାନ ଆହରଣ କରିପାରୁଛି । ସବୁଜପତ୍ର, ଶର୍କରା ଓ ଶ୍ୱେତସାର ପାଇବା ନିମନ୍ତେ ସୂର୍ଯ୍ୟକିରଣ, ଜଳ ଓ ବାୟୁକୁ କିପରି ଅଜ୍ଞାତଭାବରେ ବ୍ୟବହାର କରେ—ଏହି ଜଟିଳ ପ୍ରକ୍ରିୟା ଆଣବିକ-ଶକ୍ତି ସାହାଯ୍ୟରେ ଜଣାଯାଏ । କୃଷିକ୍ଷେତ୍ରରେ ମଧ୍ୟ ଏହାର ପ୍ରଭୂତ ବ୍ୟବହାର ହେଉଛି । ଉଦ୍ଭିଦ ଜୀବନ ଓ ବୃଦ୍ଧିର ରହସ୍ୟ ଜାଣି ଏହି ଧରଣର ଶସ୍ୟ ଉତ୍ପାଦନ କରିବା ଆଜି ଆଣବିକ ଶକ୍ତି ସାହାଯ୍ୟରେ ସମ୍ଭବ ହୋଇପାରୁଛି । ଏହା ସାହାଯ୍ୟରେ ଉଦ୍ଭିଦ ଶସ୍ୟ—କୀଟପତଙ୍ଗଗୁଡ଼ିକୁ ନଷ୍ଟ କରାଯାଇ ପାରୁଛି । ନୂତନ ଧରଣର ଉଦ୍ଭିଦ ସୃଷ୍ଟି କରି ଅଧିକ ପରିମାଣ ଉତ୍କୃଷ୍ଟ ଶସ୍ୟ ଉତ୍ପାଦନ କରାଯାଇ ପାରୁଛି ଏବଂ ସାର ବ୍ୟବହାର କରିବାର ଉନ୍ନତ ପଦ୍ଧତିଗୁଡ଼ିକ ଜଣାଯାଇ ପାରୁଛି । ତେଜସ୍କ୍ରିୟ ଫସ୍‌ଫରସ ସଂସ୍ଥାନୀ ବ୍ୟବହାର କରି ଉଦ୍ଭିଦ କେତେ ସାର ଗ୍ରହଣ କରେ ତାହା ନିର୍ଦ୍ଧାର୍ଯ୍ୟ ଭାବେ ଜଣାଯାଇ

ପାରୁଛି । ଫଳରେ ଅଧିକ ସାର ବ୍ୟବହାର କରିବାର ଆବଶ୍ୟକତା ରହୁନାହିଁ । ପୁଣି ବୃକ୍ଷ ମଧ୍ୟରେ ଜୀବନୀଶକ୍ତିର ବୃଦ୍ଧି ଓ ଖାଦ୍ୟ ଉତ୍ପାଦନ ପଦ୍ଧତିଗୁଡ଼ିକ ଏହି ତେଜସ୍କ୍ରିୟ ସମ୍ଥାନୀ ସାହାଯ୍ୟରେ ଉତ୍ତମରୂପେ ଜଣାଯାଇ ପାରୁଛି । ପୁଣି ଏହାର ସାହାଯ୍ୟରେ ମଣିଷ ଶରୀରର ବିଭିନ୍ନ ପ୍ରକ୍ରିୟା ଓ ପ୍ରାଣମିତିକ ନୂତନ ତଥ୍ୟ ସବୁ ସଂଗ୍ରହ କରାଯାଇ ପାରୁଛି (ଯଥା-ତେଜସ୍କ୍ରିୟ ସୋଡ଼ିଅମ୍, ଆଇଓଡ଼ିନ୍ ଓ ଫସ୍ ଫରସ ସମ୍ଥାନୀ ଇତ୍ୟାଦି ଦ୍ୱାରା) ।

ସୁତରାଂ ମାନବର କଲ୍ୟାଣକଳ୍ପେ ପରମାଣୁଶକ୍ତି ଯେ ନୂତନ ସ୍ୱର୍ଗ ଖୋଲିଦେବ ଏଥିରେ ସନ୍ଦେହ ନାହିଁ । ବିଜ୍ଞାନ ଏହି ମାନବିକତାର ଦୀକ୍ଷାରେ ଦୀକ୍ଷିତ ହେବା ଆବଶ୍ୟକ । ବିଜ୍ଞାନ ଓ ଶିକ୍ଷାର ସମ୍ବନ୍ଧ ଏପରି ଭାବରେ ନିୟନ୍ତ୍ରିତ ହେବା ବିଧେୟ, ଯଦ୍ୱାରା ଏକ ବୈଜ୍ଞାନିକ ମାନବିକତା (Scientific humanism) ଗଢ଼ି ଉଠିବ । ବିଜ୍ଞାନକୁ ବାଦ ଦେଇ କୌଣସି ଶିକ୍ଷାର କଳ୍ପନା କରାଯାଇ ପାରିବନା । ଶିକ୍ଷା ପ୍ରଣାଳୀ ଏପରି ଭାବେ ସଂଗଠିତ ହେବାଉଚିତ ଯଦ୍ୱାରା ବିଜ୍ଞାନର ଉତ୍ତରୋତ୍ତର ପ୍ରସାର ହେବା ସଙ୍ଗେ ସଙ୍ଗେ ବୈଜ୍ଞାନିକ ମାନବିକତାର ଅଭିବୃଦ୍ଧି ଘଟିବ ।

ଏଠାରେ ବିଜ୍ଞାନର ଆଉ ଏକ ଅଶେଷ ସମ୍ଭାବନା ବିଷୟରେ ଉଲ୍ଲେଖ କରାଯାଇପାରେ । ଏହା ହେଉଛି ମନୋବିଜ୍ଞାନ । ବୈଜ୍ଞାନିକ ଗବେଷଣା ଫଳରେ ମନୁଷ୍ୟ ମନର ପ୍ରକୃତି, ପରିସ୍ଥିତିର ବୈଚିତ୍ର୍ୟ ଓ ଘାତପ୍ରତିଘାତ ଯୋଗୁ ତା'ର କ୍ରିୟା ଓ ପ୍ରତିକ୍ରିୟା ଏବଂ ମାନସିକ ବିକଳ୍ପ ଓ ବିକାରଗୁଡ଼ିକର କାରଣ ବିଷୟରେ ପ୍ରକୃତ ସତ୍ୟ ପ୍ରକାଶ ପାଇଛି । ଏହା ଫଳରେ ଅସ୍ୱାଭାବୀ ଓ ବିକାରଗ୍ରସ୍ତ ଲୋକମାନଙ୍କର ପ୍ରକୃତ ଯତ୍ନ ଓ ଚିକିତ୍ସା କରାଯାଇପାରୁଛି । ମଣିଷ ମନ ଏକ ଯୌଗିକ

ଧାରା । ତା'ର ଚେତନ ଓ ଅବଚେତନ ମନ ମାନବ ଓ ମାନବ, ମାନବ ଓ ପରିସ୍ଥିତି ପ୍ରଭୃତି ବସ୍ତୁ ସମ୍ବନ୍ଧଦ୍ୱାରା ନିୟନ୍ତ୍ରିତ ହେଉଛି । ସାମାଜିକ ଓ ପାରିପାର୍ଶ୍ୱିକ ବିଧାନଗୁଡ଼ିକ ମଣିଷର କାର୍ଯ୍ୟକଳାପରେ ଏକ ସୀମାସରହଦ ଟାଣିଦିଅନ୍ତି । ଏହା ଫଳରେ ମଣିଷର ଇଚ୍ଛା, ପ୍ରବଣତା ଓ ଆକାଂକ୍ଷା ବହୁ ପରିମାଣରେ ବାଧାପାଏ । ଏହି ବାଧାପ୍ରାପ୍ତ ପ୍ରବଣତା ନାନା ପ୍ରକାରର ଗୁଡ଼ିକିଆ (complex) ଓ ନିଗ୍ରହ (repression) ରୂପେ ଆତ୍ମପ୍ରକାଶ କରେ ଏବଂ ତା'ର ସମସ୍ତ କାର୍ଯ୍ୟକଳାପକୁ ଏକ ନିର୍ଦ୍ଦିଷ୍ଟ ଉପାୟରେ ନିୟନ୍ତ୍ରିତ (orientation) କରେ । ଏହି ସମସ୍ତ ଗୁଡ଼ିକିଆରୁ ମୁକ୍ତ କରି ଉପଯୁକ୍ତ ପରୀକ୍ଷା ଓ ପର୍ଯ୍ୟବେକ୍ଷଣଦ୍ୱାରା ପ୍ରତ୍ୟେକ ବ୍ୟକ୍ତିର ଅନ୍ତର୍ନିହିତ ସୁପ୍ତ ପ୍ରତିଭାକୁ ଆବିଷ୍କାର କରି ତା'ର ଯଥାଯଥ ବିକାଶ କରାଇବା ମନୋବିଜ୍ଞାନ ପକ୍ଷରେ ଆଜି ସମ୍ଭବ ହୋଇଛି । ଏହାକୁ ଶିକ୍ଷଣ ମନୋବିଦ୍ୟା (educational psychology) କହନ୍ତି । ପୁଣି ଶିଶୁଚରିତ୍ର ଉତ୍ତମରୂପେ ଜଣାଥିବାରୁ ଏହା ଆହୁରି ସହଜ ହୋଇପାରୁଛି । ଗୋଟିଏ ପ୍ରବଚନ ଅଛି ଯେ, କଞ୍ଚା ହାଣ୍ଡିରେ ଯେଉଁ ଦାଗ ରହେ, ତାହା ଯାଏ ନାହିଁ — ଶିଶୁ ପ୍ରତି ଏହା ବେଶୀ ପ୍ରଯୁଜ୍ୟ । କେତେକ ମନୋବିତ୍‌ଙ୍କ ମତରେ ଅତି ଶୈଶବକାଳରୁ ଶିଶୁମନରେ ଯେଉଁ ଦାଗ ଓ ପ୍ରଭାବ ରହେ, ତାହା ଭବିଷ୍ୟତ ଜୀବନରେ ତାର ସମସ୍ତ ଭାବ, ସମ୍ବେଦନ ଓ ବ୍ୟକ୍ତିତ୍ୱକୁ ସମ୍ପୂର୍ଣ୍ଣଭାବେ ନିୟନ୍ତ୍ରିତ କରେ । ଅର୍ଥାତ୍ ବାଲ୍ୟକାଳର ଅତି ତୁଚ୍ଛ ନଗଣ୍ୟ ଘଟଣା ପ୍ରବାହଗୁଡ଼ିକ ମଧ୍ୟରେ ଶିଶୁର ବ୍ୟକ୍ତିତ୍ୱଗଠନର ଏକ ଦୈବୀ ନିବନ୍ଧ (organic destiny) ପଡ଼ିଯାଏ । ସେହି ଅନୁସାରେ ତା'ର ଭବିଷ୍ୟତ ଜୀବନ ଗଢ଼ିଉଠେ । ଏଗୁଡ଼ିକ ଉତ୍ତମରୂପେ ଜାଣି ହେଉଥିବାରୁ ଦେଶର ଭବିଷ୍ୟତ ବଂଶଧରମାନଙ୍କୁ

ଠିକଣା ପଥରେ ଗଢ଼ିବାର ସୁଯୋଗ ମିଳେ । ସମାଜର ଅପରାଧ
ପ୍ରବଣତା ବିଷୟରେ ସତ୍ୟାସତ୍ୟ ଜାଣି ହୋଇ ତା'ର ପ୍ରତିକାର
କରିହୁଏ । ଏହିରୂପେ ବିଜ୍ଞାନ ବହୁ ତଥ୍ୟ ଉପରେ ଆଲୋକପାତ
କରି ସମାଜର ଅଶେଷ ମଙ୍ଗଳବିଧାନ କରୁଛି । ଆଧୁନିକ ଶିକ୍ଷାପ୍ରଣାଳୀ
ଏବଂବିଧ ଉପାୟରେ ବିଜ୍ଞାନଲବ୍ଧ ଜ୍ଞାନଦ୍ୱାରା ଉପକୃତ ଓ ସମୃଦ୍ଧିମନ୍ତ
ହେଉଛି । ମନୋବିଜ୍ଞାନର ତଥ୍ୟଗୁଡ଼ିକ କି ଉପାୟରେ ଶିକ୍ଷା-
ପ୍ରଣାଳୀକୁ ଉନ୍ନତକରି ମାନବର କଲ୍ୟାଣସାଧନରେ ବ୍ୟସ୍ତ ହେବ,
ଏଠାରେ ସେ ବିଷୟରେ କିଛି କୁହାଯାଇପାରେ । ଆଇନକାନୁନ
ଓ ମନସ୍ତତ୍ତ୍ୱର ନିଗୂଢ଼ ସମ୍ପର୍କ ରହିଛି । ଆଜିସୁଦ୍ଧା ପାଗଳାମି ଇଚ୍ଛା,
ଦ୍ୱେଷ, ମାନସିକ ନିଷ୍ଠୁରତା, ଭ୍ରମ, ଅଯଥା ପ୍ରଭାବ ପ୍ରଭୃତି ଆଇନ-
କ୍ଷେତ୍ରରେ ସମସ୍ୟା ହୋଇ ରହିଛି । କେବଳ ମନସ୍ତତ୍ତ୍ୱବିତ୍ ଏହାର
ସ୍ୱରୂପ ପ୍ରକାଶ କରିପାରେ । ଦେଶର ନିୟମ ଅନୁସାରେ ତଳ
କୋର୍ଟର ସାକ୍ଷୀମାନଙ୍କ ଉପରେ ମକଦ୍ଦମାର ଭାଗ୍ୟ ନିର୍ଭର କରିଥାଏ ।
ତଳକୋର୍ଟରେ ଯାହା ସାକ୍ଷ୍ୟ ଗ୍ରହଣ କରାଯାଏ, ଉପରକୋର୍ଟରେ
ତାଙ୍କୁ ଗ୍ରହଣ କରାଯାଏ—ପ୍ରଶ୍ନ କରାଯାଏ ନାହିଁ ; କିନ୍ତୁ ତଳ
କୋର୍ଟର ସାକ୍ଷୀ ଯେ ସବୁବେଳେ ଗ୍ରହଣୀୟ, ଏହା ନୁହେଁ, କାରଣ
ବ୍ୟକ୍ତିଗତଭାବେ ସାକ୍ଷୀ ବହୁ ଗୂଢ଼ଚେଷ୍ଟାଦ୍ୱାରା ପରିଚାଳିତ ହୋଇଥିବା
ସ୍ୱାଭାବିକ । ତା'ର ବହୁ ଅନ୍ତର୍ନିହିତ ତ୍ରୁଟି ଓ ପ୍ରମାଦ ଥାଇପାରେ ।
ହୁଏତ ଘଟଣାଟିକୁ ଲକ୍ଷ୍ୟ କରିବାରେ ତାର ତ୍ରୁଟି ଥାଇପାରେ କିମ୍ବା
ସ୍ମରଣ କରିବାରେ ଅବା ସ୍ମରଣରେ ଥିବା ଘଟଣାକୁ ପ୍ରକାଶ
କରିବାରେ ଅନ୍ତର୍ନିହିତ ପ୍ରମାଦ ଥାଇପାରେ । କେବଳ ମନସ୍ତତ୍ତ୍ୱବିତ୍
ଏହା ଜାଣିପାରେ । କିନ୍ତୁ କୋର୍ଟରେ ସାକ୍ଷ୍ୟଗ୍ରହଣ ବେଳେ ଏହା
ବିଚାରକୁ ନିଆଯାଏ ନାହିଁ । ଏହାଛଡ଼ା ବିଚାରକମାନଙ୍କର ବ୍ୟକ୍ତିଗତ
ଗୂଢ଼ଚେଷ୍ଟା ତ ଅଛି । ଏହି ହେତୁ ସୁବିଚାର ସମ୍ଭବ ହୁଏ ନାହିଁ ।

ପୁଣି ସାକ୍ଷ୍ୟ ଗ୍ରହଣ ବେଳେ ସତ୍ୟାସତ୍ୟ ନିରୂପଣ ପାଇଁ ସାକ୍ଷୀର କହିବାର ଭାବଭଙ୍ଗୀ ଉପରେ ଜୋର ଦିଆଯାଏ, ଯଥା :— କହିବା ବେଳେ ଥତମତ ହେବା, ନୟନ ଟୋକିବା ଇତ୍ୟାଦି । କିନ୍ତୁ ଏହା ଉପରେ ପର୍ଯ୍ୟବସିତ ବିଶ୍ୱାସଗୁଡ଼ିକ ଯେ ପ୍ରମାଦପୂର୍ଣ୍ଣ, ଏଥିରେ ସନ୍ଦେହ ନାହିଁ । କାରଣ ସାକ୍ଷୀର ଆତ୍ମଦୈନ୍ୟ (inferiority complex) ଗୁଡ଼ିଏଷା ଓ ନିଗ୍ରହ ପ୍ରଭୃତି ଭାବ ତା'ର ବହୁ ଭାବଭଙ୍ଗୀ ନିରୂପିତ କରେ । କେବଳ ମନସ୍ତତ୍ତ୍ୱବିତ୍ ଏ ବିଷୟରେ ଶେଷ ସିଦ୍ଧାନ୍ତ ଦେଇପାରେ । ଶିକ୍ଷାପ୍ରଣାଳୀରେ ଆଇନକାନୁନର ଏହି ମନୋବିଜ୍ଞାନ ଦିଗ ପ୍ରତି ନଜର ଦେଲେ ଏତାଦୃଶ ପ୍ରମାଦ ଦୂରୀଭୂତ ହେବ ଏବଂ ପ୍ରତ୍ୟେକ ନାଗରିକ ସୁବିଚାର ପାଇ ପାରିବ ।

ପ୍ରସଙ୍ଗ କ୍ରମେ ଏଠାରେ ଆଉ ଏକ ବିଷୟର ଉଲ୍ଲେଖ କରାଯାଇପାରେ । ନିକଟରେ ଆମେରିକାର "କିନ୍‌ସେ" ନାମକ ଏକ ମନସ୍ତତ୍ତ୍ୱବିତ୍, ସାମାଜିକ ଅବସ୍ଥା, ବୟସ, ଶିକ୍ଷା, ବ୍ୟବସାୟ, ଧର୍ମ ଓ ପରିସ୍ଥିତି ଦୃଷ୍ଟିରୁ ମାନବର ପ୍ରାକୃତିକ ଜୀବନ (Sexual life)ର ଯେଉଁ ବିଚିତ୍ରତା, ତା'ର ଏକ ବିଶଦ ବିବରଣୀ ସଙ୍କଳନ କରିଛନ୍ତି । ପ୍ରବୃତ୍ତି ମଣିଷର ଅତି ଆଦିମ, ପ୍ରାଥମିକ ଓ ସହଜାତ ଧର୍ମ । କାଳ ଓ ପାତ୍ର ଭେଦରେ ମଣିଷର ପ୍ରାକୃତିକ ଜୀବନର ରୂପ କିପରି ପରିବର୍ତ୍ତିତ ହୁଏ ତାହା ଏଥିରୁ ଉଣା ଅଧିକେ ଜଣାଯାଏ । ଏହି ବିବରଣୀରୁ ବହୁ ଚିତ୍ତାକର୍ଷକ ତଥ୍ୟ ମିଳିଛି । ସଂସ୍କୃତି, ଶିକ୍ଷା ଓ ସମାଜ ନେଇ ମଣିଷର ପ୍ରାକୃତିକ ଜୀବନ ମଧ୍ୟରେ କି ରୂପ ପରିବର୍ତ୍ତନ ସଙ୍ଗଠିତ ହୁଏ ଏହି ବିବରଣୀ ତାହା ପ୍ରକାଶ କରେ । ମୋଟ ଉପରେ ଶ୍ରେଣୀ ମନସ୍ତତ୍ତ୍ୱ (Class-Psychology) ଏହା ବିଶେଷ ଭାବେ ପ୍ରତିଫଳିତ କରେ । ଏହି ରିପୋର୍ଟ ଉପରେ

ଆମେରିକାରେ ବହୁ ଆଲୋଚନା ହୋଇଗଲାଣି । ଏହି ରିପୋର୍ଟରେ ସତ୍ୟାସତ୍ୟ ଦୃଷ୍ଟିରୁ ମଣିଷର ପ୍ରାବୃତ୍ତିକ ଜୀବନର ବିଭିନ୍ନ ସ୍ତର ମଧ୍ୟରେ ଭାରସାମ୍ୟ ଓ ଅଭିଯୋଜନା (adaptation) ସ୍ଥାପନ କରି ତା'ର ପ୍ରାବୃତ୍ତିକ ଜୀବନର ସ୍ୱାଭାବିକ ସ୍ୱଚ୍ଛନ୍ଦ ବିକାଶ କରାଇ ବ୍ୟକ୍ତିର ପାରସ୍ପରିକ ସ୍ନେହ ଅନୁରାଗ ତଥା ସମାଜ ଓ ଧର୍ମ ରକ୍ଷା କରିବାକୁ ଆମେରିକାରେ ଏକ ଅଭିନବ ପ୍ରଚେଷ୍ଟା ଚାଲିଛି । ଆଜି ସମାଜରେ ଅକଳନ ଧର୍ଷଣ, ଅତ୍ୟାଚାର, ବିବାହ ଉଚ୍ଛେଦ, ଭଗ୍ନ ପରିବାର, ବ୍ୟର୍ଥତା, ଗ୍ଲାନି ଓ ମନୋବିକାର ଦେଖା ଯାଉଛି । ତାହା ଏହି ପ୍ରାବୃତ୍ତିକ ଜୀବନର ଏକ ବିପର୍ଯ୍ୟସ୍ତ ସୃଷ୍ଟିଏ । ଶ୍ରେଣୀଗତ ଚରିତ୍ର କି ଉପାୟରେ ପ୍ରାବୃତ୍ତିକ ଜୀବନ ନିୟନ୍ତ୍ରିତ କରେ ତାହା ଜାଣି ସେହିରୂପେ ସମାଜର ଶିକ୍ଷାପ୍ରଣାଳୀ, ଆଇନ କାନୁନ ବଦଳାଇବାଦ୍ୱାରା ସମାଜର ବିଭିନ୍ନ ଗୋଷ୍ଠୀର ପ୍ରକୃତ ବିକାଶ ସାଧିତ ହେବ । ସମାଜରେ ଯାହା ବାସ୍ତବ ଓ ସତ୍ୟତା ସହ ପ୍ରଚଳିତ ମାତଗୁଡ଼ିକର ଏକ ସମନ୍ୱୟ ଆଣିବା ଦରକାର । ପ୍ରଚଳିତ ମାତଗୁଡ଼ିକ ଉପରେ ବହୁ ପରିବାରର ସୁଖ, ଆଶା, ଆଶଙ୍କା, ବ୍ୟର୍ଥତା ଓ କୃତକାର୍ଯ୍ୟତା ନିର୍ଭର କରେ । ପ୍ରଚଳିତ ମାତଗୁଡ଼ିକ ମଧ୍ୟରେ ଆଜି ବି ପ୍ରବୃତ୍ତି ଓ ବିବାହ ଜନିତ ବହୁ ବିକଳାଙ୍ଗ ଓ ଭ୍ରମଧାରଣା ରହିଛି । ତାହା ସାମାଜିକ ମାନବକୁ ତିଳେ ତିଳେ ନିର୍ଯ୍ୟାତିତ କରୁଛି । ବିବାହ ଉଚ୍ଛେଦ ପାଇଁ ଗଠନ କରାଯାଉଥିବା ଆଇନଗୁଡ଼ିକ କେବଳ ଏକ ଭାବବାଦ (Idealism) ବା ରମ୍ୟବାଦ (Romanticism) ରେ ବୁଡ଼ିଯିବା ଉଚିତ ନୁହେଁ । ତାହା ମାନବର ପ୍ରାବୃତ୍ତିକ ଆବଶ୍ୟକତା ଓ ମନସ୍ତାତ୍ତ୍ୱିକ ଜୀବନର ଚରିତ୍ର ଉପରେ ପର୍ଯ୍ୟବସିତ ହେବା ଦରକାର । ବିକାଶ ପାଇଁ ଯେଉଁ ସବୁ ବୃତ୍ତି ବାଧା ଦିଏ ସେହି ସକଳ ବୃତ୍ତିକୁ ସଚେତନଭାବେ

ନିର୍ଦ୍ଦେଶ ଓ ନିୟନ୍ତ୍ରଣ କରିବା ଶିକ୍ଷା ଓ ଆଇନର ଲକ୍ଷ୍ୟ । ଏହି ନିର୍ଦ୍ଦେଶ ଓ ନିୟନ୍ତ୍ରଣ ମଣିଷକୁ ନିଜର ଭୁଲଭଟକା ସୁଧାରିବାର ସୁଯୋଗ ଦେବା ଉଚିତ । ଏହା ମଣିଷର ଅନ୍ତର୍ନିହିତ ପ୍ରବୃତ୍ତିକୁ ସମ୍ମାନ ଦେବା ଉଚିତ । ଆଜି କିନ୍‌ସେ ରିପୋର୍ଟ ପ୍ରତି ଦୃଷ୍ଟି ଦେଇ ଆମେରିକାର ସମାଜ ନିଜର ଖାଦ୍ୟ ଓ ପ୍ରବୃତ୍ତି ମଧ୍ୟରେ ଭାରସାମ୍ୟ ରକ୍ଷା କରିବାକୁ ଚେଷ୍ଟା କରୁଛି । ପ୍ରଚଳିତ ଜନ-ନୀତି (Population Policy), ବିବାହ ଉଚ୍ଛେଦ ନୀତି ଓ ଏକପତ୍ନୀ ବ୍ୟବସ୍ଥାକୁ ନିୟନ୍ତ୍ରଣ କରାଯିବାର ଆବଶ୍ୟକତା ବିଷୟରେ ସଚେତନ ହେଉଛି । ପ୍ରତ୍ୟେକ ସମାଜ ପକ୍ଷରେ ପ୍ରାବୃତ୍ତିକ ଆବଶ୍ୟକତା ଓ ବୈଶିଷ୍ଟ୍ୟତାର ଏହିସବୁ ବ୍ୟବସ୍ଥା ପ୍ରତି ଦୃଷ୍ଟି ଦେବା ବାଞ୍ଛନୀୟ ମନେହୁଏ ।

ମୋଟ ଉପରେ ସଂସ୍କୃତି, ସମାଜ, ଆଇନ, ଅର୍ଥନୀତି ଓ ରାଜନୀତି କ୍ଷେତ୍ରରେ ଯେଉଁ ନୀତିଗୁଡ଼ିକ ଗ୍ରହଣୀୟ ସେଗୁଡ଼ିକ ମଣିଷର ଅନ୍ତର୍ନିହିତ ପ୍ରବୃତ୍ତିକୁ ସ୍ୱୀକାର କରି ଗଠିତ ହେବା ଉଚିତ । ସଂସ୍କୃତି, ପରମ୍ପରା ଓ ଐତିହ୍ୟ ନେଇ ଏହାର ବିଚାରିତା ସମ୍ଭବ ହୁଏ । ଶିକ୍ଷା ଏହି ମନୋବୃତ୍ତିକୁ ବିକାଶ କରାଇବା ଉଚିତ । ନ ହେଲେ ପ୍ରଚଳିତ ବ୍ୟବସ୍ଥାଗୁଡ଼ିକ ସମ୍ପୂର୍ଣ୍ଣ ବ୍ୟର୍ଥ ହୋଇଯିବ । ଆମେରିକାରେ ଏହି ଧରଣର ଏକ ନୂତନ ପରୀକ୍ଷା ଚାଲିଛି । ଅବଶ୍ୟ ଏ ବିଷୟରେ କେତେକ ବାଦାନୁବାଦ ରହିଛି । କିନ୍ତୁ ପରୀକ୍ଷାମୂଳକ ଭାବେ ଯେ କୌଣସି ଆପାତତଃ ଫଳପ୍ରଦ ବ୍ୟବସ୍ଥାକୁ ଗ୍ରହଣ କରିବା ଅନ୍ୟାୟ ହେବ ନାହିଁ । ଆଜି ଭାରତରେ ପଞ୍ଚବାର୍ଷିକ ଯୋଜନା ଓ ଗ୍ରାମ-ଗୋଷ୍ଠୀ ଯୋଜନା ଜରିଆରେ ସାମ୍ୟବାଦୀ ସମାଜ ଓ ନୂତନ ଭାରତ ନିର୍ମାଣ ରଚନା ହେବାକୁ ଯାଉଛି । ଏହି ଯୋଜନାରେ କିନସେ ରିପୋର୍ଟ ପରି ଏକ ରିପୋର୍ଟ ସଙ୍କଳନର ଆବଶ୍ୟକତାକୁ ଅସ୍ୱୀକାର କରିହେବ ନାହିଁ ।

ଉପରୋକ୍ତ ଆଲୋଚନାରୁ ଏଇଆ ପ୍ରତୀୟମାନ ହୁଏ ଯେ, ବିଜ୍ଞାନ ଓ ମାନବିକତାର ସଂଯୋଗରେ ସମଗ୍ର ମାନବ ସମାଜ ପ୍ରଭୂତଭାବେ ଉପକୃତ ହେବ । ଶିଶୁ ଚରିତ୍ର ଅଧ୍ୟୟନରୁ ଦେଶର ଭବିଷ୍ୟତ ବଂଶଧରମାନଙ୍କୁ ଉତ୍ତମରୂପେ ଗଢ଼ିହେବ । ଅପରାଧ ମନୋବିଦ୍ୟାରୁ ଦେଶର ଅପରାଧ ପ୍ରବଣତା ଦୂର କରିହେବ । ଶିକ୍ଷଣ ମନୋବିଦ୍ୟା ଦ୍ୱାରା ମଣିଷର ଅନ୍ତର୍ନିହିତ ପ୍ରତିଭାକୁ ଜାଗ୍ରତ ଓ ଉନ୍ମେଷିତ କରାଯାଇପାରିବ । ମଣିଷର ଅନ୍ତର୍ନିହିତ ପ୍ରକୃତିକୁ ସମ୍ମାନ ଦେଲେ ପ୍ରଚଳିତ ବ୍ୟବସ୍ଥା ତଥା ଉନ୍ନତିକାମୀ ଯୋଜନା-ଗୁଡ଼ିକ ସଫଳ ହେବ । ପୁଣି ମାନବପ୍ରତି ସ୍ନେହ ଅନୁରାଗ ଭ୍ରାତୃଭାବ ଆଣିଲେ ବିଜ୍ଞାନର ଧ୍ୱଂସକ ଶକ୍ତିଗୁଡ଼ିକ ଶାନ୍ତିପୂର୍ଣ୍ଣ ଉପାୟରେ ବ୍ୟବହୃତ ହୋଇ ମାନବ କଲ୍ୟାଣର ଅଶେଷ ସମ୍ଭାବନା ଖୋଲିଦେବ । ବିଜ୍ଞାନ-ସଭାରେ ଗୋଟିଏ କଥାପ୍ରତି ଦୃଷ୍ଟିଦେବା ଉଚିତ— ମାନବର କଲ୍ୟାଣ । ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ଏହି ବୈଜ୍ଞାନିକ ମାନବିକତା Scientific humanism] ଭାବଦ୍ୱାରା ପ୍ରଣୋଦିତ ହୋଇପାରିଲେ ବିଜ୍ଞାନଶିକ୍ଷା ସାର୍ଥକ ହୋଇଛି ବୋଲି ମନେହେବ ।

(ବିଜ୍ଞାନ ପ୍ରଚାର ସମିତି ବାର୍ଷିକ ଅଧିବେଶନରେ ପଠିତ) ।

(୧) Aerial board of control.

(୨) (a) First men in the moon, (b) Invisible man, (c) Shape of things to come, (d) Time machine, (e) The war of the worlds, (f) When the sleeper wakes.

(୩) (a) Brave new world, (b) Point counter point, (c) Ape & Essence.

(୪) (a) 1984.
(b) Animal farm.

(୫) The machine stops.

# ବିଜ୍ଞାନ ଓ ସମାଜ

ବିଜ୍ଞାନର ସଠିକ ଜନ୍ମ ତାରିଖ ନିରୂପଣ କରିବା କଷ୍ଟକର ହେବ । ତେବେ ଏକଥା ସତ ଯେ, ସବୁ ଚିନ୍ତାଧାରାର ବିକାଶ ପରି ବିଜ୍ଞାନ ଏକ ସାମାଜିକ ଧାରା ରୂପେ ପ୍ରଥମେ ବିକାଶ ଲାଭ କରିଛି ଏବଂ ସମାଜର ସମସାମୟିକ ଚିନ୍ତାର ସ୍ତର ଓ ମାନ ଉପରେ ଏହାର ବିକାଶ ଓ ଅଭିବୃଦ୍ଧି ନିର୍ଭର କରିଛି । ଅନ୍ୟ କଥାରେ କହିଲେ ସମାଜର ଅଗ୍ରଗତି ବିଜ୍ଞାନର ଉନ୍ମେଷକୁ ପ୍ରେରଣା ଯୋଗାଇଛି ଏବଂ ବିଜ୍ଞାନର ଅଗ୍ରଗତି ସାମାଜିକ ପ୍ରଗତି ପାଇଁ ପଥ କଢ଼ାଇଛି ।

ବିଜ୍ଞାନର ଚାରୋଟି ଦିଗ ବା ପର୍ଯ୍ୟାୟ ଅଛି । ପର୍ଯ୍ୟବେକ୍ଷଣ (observation); ପ୍ରତିଜ୍ଞା (proposition); ପରୀକ୍ଷା (experiment) ଓ ମନନ (theory) । ପୁରାତନ ବିଜ୍ଞାନ ପର୍ଯ୍ୟବେକ୍ଷଣରୁ ଜନ୍ମ । ଯେମିତି ଖ୍ରୀଷ୍ଟପୂର୍ବ ୨୫ — ଶତାବ୍ଦୀର ବାବିଲୋନର ଖଗୋଳ ବିଜ୍ଞାନ ଅବା ମିଶରର ଔଷଧ ବିଜ୍ଞାନ । କିନ୍ତୁ ସେ କାଳରେ ପ୍ରତିଜ୍ଞାର ଧାରଣା ନ ଥିଲା । ଫଳରେ ବାବିଲୋନରେ ଖଗୋଳ ବିଜ୍ଞାନ ଖଗୋଳ ତତ୍ତ୍ୱ (astrology) ରେ ଏବଂ ମିଶରରେ ଔଷଧ ବିଜ୍ଞାନ ତନ୍ତ୍ର ଓ ଭେଲକିବିଦ୍ୟା ରୂପରେ ଘଟି ପରିବର୍ତ୍ତନ କଲା । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଗ୍ରୀକ୍ ବିଜ୍ଞାନରେ ପ୍ରତିଜ୍ଞାର ଧାରଣା ଆସିଲା । ମିଲେଟସର ଥେଲ୍ସ୍ ଏହାର ପ୍ରବର୍ତ୍ତକ । ଆନାକ୍ସିମାଣ୍ଡର, ଆନାକ୍ସିମେନ୍ସ୍ ଓ ହିରାକ୍ଲିଟସ୍ ପ୍ରଭୃତି ଏ ଧାରଣାକୁ

ଭୂତିଭୂତ କଲେ । ତାପରେ ପିଥାଗୋରାସ୍ ଓ ତା'ଙ୍କର ଶିଷ୍ୟମାନେ ପରୀକ୍ଷା ଓ ମନନର ଧାରଣା ଆଣିଲେ । କିନ୍ତୁ ତତ୍‌କାଳୀନ ବୈଜ୍ଞାନିକ ଦୃଷ୍ଟିକୋଣ ଆଧୁନିକ ଦୃଷ୍ଟିକୋଣଠାରୁ ପୃଥକ ଥିଲା । ଏ ପରୀକ୍ଷା କେବଳ ପ୍ରତିଜ୍ଞାର ସାହାଯ୍ୟକାରୀ ଥିଲା । ପରିପୂରକ ନୁହେଁ । ଏଠାରେ ଏଇଆ ଲକ୍ଷ୍ୟ କରିବାର କଥା ଯେ—ଗ୍ରୀକର ବିଳାସରତ, ଅଭିଜାତକୁଳୀନ ଚିନ୍ତାନାୟକମାନେ ଦାସତ୍ୱ ପ୍ରଥା ଉପରେ ପର୍ଯ୍ୟବସିତ ଯେଉଁ ସଭ୍ୟତା ଉପରେ ଜ୍ଞାନ ଆହରଣ ଓ ଅନ୍ୱେଷଣ କରୁଥିଲେ, ତାହା ବିଜ୍ଞାନର ବଧିବଦ୍ଧ ପରୀକ୍ଷା ପାଇଁ ଏକ ବିରାଟ ପ୍ରତିବନ୍ଧକ ଥିଲା । ଏହାଦ୍ୱାରା ସେକାଳରେ ବିଜ୍ଞାନର ଧାତୁବିଜ୍ଞାନ, ମୃତ୍ତିକା ବିଜ୍ଞାନ, ରଙ୍ଗ ଓ ରସାୟନ ବିଭାଗଗୁଡ଼ିକର ଉନ୍ନତି ସମ୍ଭବପର ହୋଇନାହିଁ । କାରଣ ସେକାଳରେ ଦାର୍ଶନିକ ଚର୍ଚ୍ଚାଦ୍ୱାରା ନୂତନ ଜ୍ଞାନ ଆହରଣ କରାଯାଉଥିଲା— ବୈଜ୍ଞାନିକ ଗବେଷଣାଦ୍ୱାରା ନୁହେଁ । ପିଥାଗୋରାସଙ୍କ ପରବର୍ତ୍ତୀ ଓ ଆର୍କିମେଡ଼ିଜଙ୍କ (ଖ୍ରୀ: ପୂ: ୩ୟ ଶତାବ୍ଦୀ ) ପୂର୍ବବର୍ତ୍ତୀ ସକ୍ରେଟିସ ( ଖ୍ରୀ: ପୂ: ୫ ମ ଶତାବ୍ଦୀ ), ପ୍ଲାଟୋ ଓ ଆରିଷ୍ଟଟଲ ( ଖ୍ରୀ: ପୂ: ୪ର୍ଥ ଶତାବ୍ଦୀ ) ପ୍ରଭୃତି ସମସ୍ତ ମନୀଷୀଗଣ ଦାର୍ଶନିକ ଥିଲେ – ପରୀକ୍ଷବାଦୀ (experimentalist) ନୁହନ୍ତି । ଏହା ସାଙ୍ଗକୁ ତୁଳନା କଲେ କୌଟିଲ୍ୟଙ୍କ (ଖ୍ରୀ: ପୂ: ୪ର୍ଥ ଶତାବ୍ଦୀ ) ଅର୍ଥଶାସ୍ତ୍ରରେ ଔଷଧବିଜ୍ଞାନ, ନୌବିଜ୍ଞାନ ଓ ଖଣିଜ ବିଜ୍ଞାନ ସମ୍ବନ୍ଧରେ ଯେଉଁ ତଥ୍ୟସବୁ ଉଲ୍ଲେଖ ଅଛି, ତାହା ପ୍ରୟୋଗ ଦୃଷ୍ଟିରୁ ନିୟନ୍ତ୍ରିତ ବୋଲି ମନେହୁଏ । କାରଣ ସେ ସମୟରେ ସମସାମୟିକ ଭାରତୀୟ ସମାଜରେ ଶାସନର ଉପଯୋଗିତା ଦୃଷ୍ଟିରୁ ଏ ସବୁର ବିସ୍ତାର କରାଯାଇଥିଲା ।

ପ୍ଲାଟୋ (ଖ୍ରୀ: ପୂ: ୪୨୮–୩୪୮) ବସ୍ତୁ ପ୍ରକୃତି ସମ୍ବନ୍ଧରେ ଯେଉଁ ଭିନ୍ନ ମତବାଦଗୁଡ଼ିକ ପ୍ରଚାର କରି ଯାଇଥିଲେ ତାହା ବହୁକାଳ

ଧିଭ ରସାୟନ ବିଜ୍ଞାନର ଅଗ୍ରଗତିରେ ବାଧା ସ୍ୱରୂପ ଠିଆହୋଇ ରହିଲା । ବରଂ ଏହା ରସ ବିଦ୍ୟା (alchemy) ସୃଷ୍ଟି ହେବାରେ ସାହାଯ୍ୟ କଲା । ରୋମ ସାମ୍ରାଜ୍ୟ ପ୍ରତିଷ୍ଠିତ ହେଲାପରେ ରୋମାନ-ମାନେ କେବଳ ଏଗୁଡ଼ିକର ପ୍ରୟୋଗ ନେଇ ସୀମାବଦ୍ଧ ରହିଲେ । ଫଳରେ ବିଜ୍ଞାନର ଅଗ୍ରଗତି ବ୍ୟାହତ ହେଲା । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ଆର୍କିମେଡିଜଙ୍କ ଆବିର୍ଭାବ ଦ୍ୱାରା ଆଧୁନିକ ବିଜ୍ଞାନର ପ୍ରଥମ ଗୋଡ଼ାପତ୍ତନ ପଡ଼ିଲା ।

ଖ୍ରୀଷ୍ଟଧର୍ମର ଆବିର୍ଭାବ ପରେ ଏହାଦ୍ୱାରା ପ୍ରଚାରିତ ପ୍ରେମ ଓ କରୁଣାର ଭାବ ବହୁକାଳ ପର୍ଯ୍ୟନ୍ତ ବିଜ୍ଞାନ ଅଗ୍ରଗତିର ପରିପନ୍ଥୀ ରୂପେ ଛିଡ଼ା ହୋଇ ରହିଲା । ଦ୍ୱିତୀୟ ଶତାବ୍ଦୀରେ ତତ୍କାଳୀନ-ଜ୍ୟୋତିଷିଆଧାରର ପଣ୍ଡିତ ଟୋଲେମିଙ୍କ ସୂର୍ଯ୍ୟ ବୃତ୍ତ ପାଖ ପୃଥିବୀ ଘୂରୁଥିବା ଉପଯୁକ୍ତ ତତ୍ତ୍ୱ ମଧ୍ୟରେ ଦେଖିବାକୁ ମିଳେ । ଏହି ସମୟରେ ଭାରତରେ ଧର୍ମ ସମ୍ବନ୍ଧୀୟ ଦୃଷ୍ଟି କୋଣରେ ବହୁ ପରିବର୍ତ୍ତନ ସଂଘଟିତ ହୋଇଥିଲା । କନିଷ୍କ ମହାଯାନ ବୁଦ୍ଧଧର୍ମର ପ୍ରତିଷ୍ଠା କରାଇଥିଲେ । ସୁତରାଂ ସେ ଯୁଗର କବି ଅଶ୍ୱଘୋଷଙ୍କ ଲେଖାରେ ବିଜ୍ଞାନ ସମ୍ବନ୍ଧରେ ବିଶେଷ କିଛି ଉଲ୍ଲେଖ ନାହିଁ । ପଞ୍ଚମ ଶତାବ୍ଦୀରେ ଭୂମଧ୍ୟସାଗରର ସଂସ୍କୃତି ପ୍ରଥମେ ଇଉରୋପର ଅଭ୍ୟନ୍ତରକୁ ପ୍ରବେଶ ଲାଭ କଲା । ଏହି ସମୟରେ ଅଗଷ୍ଟାଇନ ତାଙ୍କର "Confession" ଓ "City of God" ପୁସ୍ତକରେ ଖ୍ରୀଷ୍ଟ ଧର୍ମର ନୀତି ସହ ସମନ୍ୱୟ ରଖି ସୃଷ୍ଟିର ବିବରଣୀ ଲେଖିଥିଲେ । ସୁତରାଂ ବିଜ୍ଞାନ ଚର୍ଚ୍ଚାର ଅବକାଶ ନ ଥିଲା । ଏହି ସମୟରେ ହିନ୍ଦୁର ଦାର୍ଶନିକ ମନ ଖଗୋଳ ବିଜ୍ଞାନର ପଞ୍ଚ ସିଦ୍ଧାନ୍ତ (ସୂର୍ଯ୍ୟ ସିଦ୍ଧାନ୍ତ, ପୈତାମହ ସିଦ୍ଧାନ୍ତ, ବଶିଷ୍ଠ ସିଦ୍ଧାନ୍ତ ପୌଲିଶ ସିଦ୍ଧାନ୍ତ ଓ ରୋମକ ସିଦ୍ଧାନ୍ତ) ଓ ଯୁଗ କଳ୍ପର ଗଣନାରେ ରତ ଥିଲା । କାରଣ ସଂସାରର ଅନିତ୍ୟତା ଓ ଅଳୀକତା ଓ କାଳର

ସମସ୍ୟାଇ ଯୁଗ ଆଗରେ ମୁଖ୍ୟ ଦାର୍ଶନିକ ସମସ୍ୟା ଥିଲା । ଷଷ୍ଠ ଶତାବ୍ଦୀରେ ବରାହ ମିହିରଙ୍କ ପଞ୍ଚ ସିଦ୍ଧାନ୍ତିକା ଓ ବୃହତ୍ ସଂହିତାରେ ବହୁ ମଣି, ମାଣିକ ଓ ମୂଲ୍ୟବାନ ପଥର ବିଷୟ ଉଲ୍ଲେଖ ଥିବାର ଦେଖାଯାଏ । କାରଣ ମଣିଷ ଜୀବନ ଉପରେ ଗ୍ରହମାନଙ୍କର ପ୍ରଭାବ ଏ କାଳରେ ଖଗୋଳ ବିଜ୍ଞାନର ଅଙ୍ଗବିଶେଷ ଥିଲା । ସପ୍ତମ ଶତାବ୍ଦୀର ପ୍ରାରମ୍ଭରେ ମୁଖ୍ୟ ସାଂସ୍କୃତିକ ପ୍ରବାହର ପୀଠ ଇସଲାମ ରାଜ୍ୟକୁ ଆସିଲା ଏବଂ ଆରବ ଦେଶଗୁଡ଼ିକ ବିଜ୍ଞାନ ଗବେଷଣାର କେନ୍ଦ୍ରସ୍ଥଳୀରୂପେ ଖ୍ୟାତି ଲାଭ କଲା । ଏହିକାଳର ସମସାମୟିକ ଚିନ୍ତାଧାରା ଓ ତାହାର ବିଜ୍ଞାନ ଉପରେ ପ୍ରଭାବ ଖଲିଫା ହାରୁନାଲ ରସିଦ ଓ ତାଙ୍କ ସମୟରୁ ପ୍ରଚଳିତ ଏସପଙ୍କ ଫେବଲ୍ ଓ ହଜାର ରଜନୀର ସୁଖପାଠ୍ୟ ଗପଗୁଡ଼ିକ ମଧ୍ୟରେ ଦେଖିବାକୁ ମିଳେ ।

ତା' ପରେ ମଧ୍ୟ ଯୁଗ ଆସିଲା । ଏ ଯୁଗରେ ଧର୍ମ ପୁରାତନ ବିଜ୍ଞାନ ଓ ଦର୍ଶନର ଜାଗା ମାଡ଼ି ବସିଲା । କେବଳ ଆରବମାନଙ୍କ ଯୋଗୁ ଏ ସମୟରେ ବିଜ୍ଞାନ ବଞ୍ଚିରହିଥିଲା । ମୁସଲମାନ ଧର୍ମ ବିଜ୍ଞାନର ବିରୋଧ କରୁ ନ ଥିଲା । ଏହି ସମୟକୁ ୟୁରୋପରେ ଧର୍ମ ଓ ବିଜ୍ଞାନ ମଧ୍ୟସ୍ଥ ଦ୍ୱନ୍ଦ୍ୱ ଆରମ୍ଭ ହୋଇଗଲା । କ୍ରୁସେଡ଼ (Crusade) ଓ ସଂସ୍କାର (Reformation) ଆନ୍ଦୋଳନ ମାଧ୍ୟମରେ ଏହା ଶ୍ରୀବୃଦ୍ଧିର ହେଲା । ଏ ସମୟର ଚିନ୍ତାଧାରାକୁ Scholasticsm ବା ପ୍ରଜ୍ଞାବାଦ କୁହାଯାଏ । ଏହା କେତେକ ଅପ୍ରାସଙ୍ଗିକ ବିଶ୍ୱାସର ସମଷ୍ଟି ମାତ୍ର । ଏଥିରେ ଅନୁଶୀଳନ ନାହିଁ କିଂବା ପର୍ଯ୍ୟବେକ୍ଷଣ ଆଉ ପରୀକ୍ଷା ନାହିଁ ।

ଇହା ପରେ ଅଭ୍ୟୁଦୟ ଯୁଗ Renaisanice Age) ପରେ ବିଜ୍ଞାନର ଅଭ୍ୟୁଦୟ ହେଲା । ଏ କାଳରେ ଲିଓନାର୍ଡୋ-ଡ୍‌ା

ଇନ୍‌ସିଙ୍କର ଆବିର୍ଭାବ ହେଲା । ସେ ଏକାଧାରରେ ଶିଳ୍ପୀ, ଚିତ୍ରକର, ବୈଜ୍ଞାନୀ, ଇଞ୍ଜିନିଅର, ପଦାର୍ଥବିତ୍, ଜୀବନ ବିଜ୍ଞାନବିତ ଓ ଦାର୍ଶନିକ ଥିଲେ । ତାଙ୍କପରେ ଷୋଡ଼ଶ ଶତାବ୍ଦୀ ବେଳକୁ ବିଜ୍ଞାନରେ (Experimental Science )ର ପୂର୍ଣ୍ଣ ପ୍ରଚଳନ ହୋଇ ସାରିଥିଲା । ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ ଏଇଆ ତଫାତ ଯେ ପାଶ୍ଚାତ୍ୟ ପରୀକ୍ଷା ମୂଳକ ବିଜ୍ଞାନଦ୍ୱାରା ପ୍ରଜ୍ଞାବାଦର କୁହେଳୀରୁ ମୁକ୍ତ ହୋଇ ପାରିଲା । କିନ୍ତୁ ପ୍ରାଚ୍ୟ ତା' ପାରିଲା ନାହିଁ । ସପ୍ତଦଶ ଶତାବ୍ଦୀଠାରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ବହୁ ନୂତନ ଯନ୍ତ୍ରପାତିର ଆବିଷ୍କାର ଫଳରେ ବୈଜ୍ଞାନିକ ଗବେଷଣାର ବହୁ ଅଗ୍ରଗତି ସାଧିତ ହେଲା । କାରଣ ଏ କାଳରେ ବିଜ୍ଞାନ ପ୍ରତି ସମାଜର ମନୋଭାବ ବଦଳି ଯାଇଥିଲା । ସାମନ୍ତବାଦୀ ପ୍ରଥାରେ ମଣିଷ-ମଣିଷ ଭିତରେ ସାମ୍ୟ ନ ଥିଲା । କିନ୍ତୁ ତାପରେ ବୁର୍ଜୋୟା ସମାଜ ଉନ୍ନତ ଯୋଗାଯୋଗ ଓ ଆମଦାନି ରପ୍ତାନିର ସୁଗମ ପନ୍ଥା ଅନୁସରଣ କରି ଶିଳ୍ପ ଓ ବାଣିଜ୍ୟର ପ୍ରସାର ଲାଭ କରାଇଲା । ଏଇ ଶକ୍ତି ପରିପୁଷ୍ଟ ବିଜ୍ଞାନ ଓ ଲାଭ-ଲୋଭୀ ମୂଳଧନ ଯୋଗାଯୋଗରେ ଆରମ୍ଭ ହେଲା ଶିଳ୍ପ ବିପ୍ଳବ ଓ ତତ୍‌ସଂକ୍ରାନ୍ତ ବିଜ୍ଞାନର ପ୍ରଭୂତ ଅଗ୍ରଗତି ।

ବର୍ତ୍ତମାନ ସମାଜ ଉପରେ ବିଜ୍ଞାନର ପ୍ରଭାବ କଥା ବିଚାର କରିଯାଇପାରେ । ପ୍ରଥମେ ବିଜ୍ଞାନ ସମାଜର ଗତାନୁଗତିକ ପରମ୍ପରାକୁ ଭାଙ୍ଗି ଦେଲା । ଯଥା—ଅନ୍ଧ ବିଶ୍ୱାସ, ମନ୍ତ୍ରଯନ୍ତ୍ର, ଭୋଜ ବିଦ୍ୟା, କାଳସୀ, ସଂସ୍କାର, ଗୁଣିଗାରେଡ଼ି କମିଆର କଥା । ଯେମିତି ସେକ୍‌ସପିଅରଙ୍କ ନାଟକ ଭିତରେ ସିଜରଙ୍କ ମୃତ୍ୟୁ ପୂର୍ବରୁ ଉଲ୍‌କାପାତ ଅବା ମାକ୍‌ବେଥ ନାଟକର ଗୁଣିଆର ରହସ୍ୟ । ଦ୍ୱିତୀୟରେ ଏହା ସାମାଜିକ ବନ୍ଧାଗତ ଗୁଡ଼ିକ ମଧ୍ୟ ନଷ୍ଟ କରି

ହେଲା । ଆଗରୁ ଗୋଷ୍ଠୀର ନେତା, ଗୀର୍ଜାର ଯାଜକ, ଅବା ମୂଳକ-ରଜାର ମୁଖ ନିସୃତ ବାଣୀକୁ ସତ୍ୟରୂପେ ପ୍ରଚଳିତ ଥିଲା । ପର୍ଯ୍ୟବେକ୍ଷଣ ଥିଲା ନାହିଁ । କିନ୍ତୁ ବିଜ୍ଞାନର ଅଗ୍ରଗତି ସଙ୍ଗେ ସଙ୍ଗେ ପର୍ଯ୍ୟବେକ୍ଷଣ ଲବ୍‌ଧ ସତ୍ୟକୁ ସତ୍ୟ ରୂପେ କଥିତ ହେଲା । ଆରିଷ୍ଟଟଲ କହୁଥିଲେ ପୁରୁଷମାନଙ୍କଠାରୁ ସ୍ତ୍ରୀମାନଙ୍କର କମ ସଂଖ୍ୟକ ଦାନ୍ତ ଥାଏ । ତାଙ୍କର ଦୁଇଟି ସ୍ତ୍ରୀ ଥିଲେ । କିନ୍ତୁ ତାଙ୍କ ଜୀବନକାଳ ଭିତରେ ସେ ଏହାର ସତ୍ୟତା ଅନୁସନ୍ଧାନ କରି ନ ଥିଲେ । ସେହିପରି ଗାଲିଲିଓ ଯେତେବେଳେ ତାଙ୍କ ନିର୍ମିତ ଦୂରବୀକ୍ଷଣ ଯନ୍ତ୍ର ବୃହସ୍ପତି ଗ୍ରହର ଚନ୍ଦ୍ରଗୁଡ଼ିକ ଆଡ଼େ ନିଯୋଜିତ କଲେ ସେତେବେଳେ ରକ୍ଷଣଶୀଳମାନେ ସେହି ଯନ୍ତ୍ରରେ ଚାହିଁବାକୁ ସାହସ କଲେ ନାହିଁ । ଦ୍ୱିତୀୟତଃ, ବିଶ୍ୱ ଜଗତର ଯେ କିଛି ଉଦ୍ଦେଶ୍ୟ purpose ଅଛି ବିଜ୍ଞାନ ଏହି ଧାରଣାକୁ ଭାଙ୍ଗିଦେଲା । ଡାରଉଇନ ବିବର୍ତ୍ତନ ବାଦର ପ୍ରବର୍ତ୍ତନ କଲେ । ସେଥିରେ ସମଗ୍ର ଉଦ୍ଭିଦ ଓ ଜୀବ ଜଗତର ଅଭ୍ୟୁଥାନ କଥା ସେ କେବଳ ଜୀବନ ସଂଗ୍ରାମ ଓ ପ୍ରାକୃତିକ ମନୋନୟନ ପ୍ରଣାଳୀ ସାହାଯ୍ୟରେ ବର୍ଣ୍ଣନା କରିଗଲେ । ପରବର୍ତ୍ତୀ କାଳରେ ଡାରଉଇନ ବାଦର ଭାବ ସକଳ ଆହରଣ କରି ଜଗତକୁ ନାଜିବାଦ ଓ ଫାସିବାଦ ଆସିଲା । ପାଭଲଭ ତାଙ୍କର ଶରୀର ବିଜ୍ଞାନ ସମ୍ବନ୍ଧୀୟ ମନନ ଗୁଡ଼ିକରେ ଜୀବର ସମସ୍ତ ବ୍ୟବହାର କେବଳ Conditioned reflex ର କାର୍ଯ୍ୟ ରୂପରେ ପ୍ରମାଣ କରିଗଲେ । ତୃତୀୟରେ—ବିଜ୍ଞାନ ମାନବ ସମକ୍ଷରେ ବିଶ୍ୱର ବିଶାଳତାର ଛବି ଆଙ୍କି ଦେଇଗଲା । ମଣିଷ କ୍ରମେ କ୍ରମେ ବିଶ୍ୱ ଜଗତର ଏକ ଗୌଣ ସ୍ଥାନକୁ ଅପସରି ଆସିଲା । କପରନିକସ୍ ପ୍ରଥମେ ପ୍ରମାଣ କଲେ ଯେ ସୂର୍ଯ୍ୟ ପୃଥିବୀ ଚାରି ପାଖରେ ଘୁରୁ ନାହିଁ । ପୃଥିବୀହିଁ ସୂର୍ଯ୍ୟ ଚାରିପାଖରେ ଘୁରୁଛି ।

ଏହାଦ୍ୱାରା ମଣିଷର ବାସସ୍ଥଳୀ ଓ ତା'ର ବୁଦ୍ଧିଆଦରେ ପ୍ରଥମେ ଆଞ୍ଚ ଆସିଲା । ବିବର୍ତ୍ତନ ବାଦ ଅନୁସାରେ ପୁଣି ପ୍ରମାଣିତ ହେଲା ଯେ ପୃଥିବୀ ଖ୍ରୀଷ୍ଟପୂର୍ବ ୪୦୦୪ରେ ସୃଷ୍ଟି ହୋଇ ନାହିଁ ଓ ମଣିଷ ଭଗବାନଙ୍କର ପ୍ରିୟ ସୃଷ୍ଟି ନୁହେଁ । ଜଡ଼ ଓ ଜୀବ ଜଗତରେ ଅଭ୍ୟୁଥାନ ଗାଥା ଗୋଟିଏ ମାଳାରେ ଗୁନ୍ଥା ମାତ୍ର । ଏହାଦ୍ୱାରା ବିଶ୍ୱପୃଥର ପାଇଁ ମଣିଷର ବୁଦ୍ଧିଆଦରେ ଆଘାତ ଲାଗିଲା । ସେତିକରେ କଥା ଛୁଣ୍ଡିଲା ନାହିଁ । ତାପରେ ଫ୍ରୟେଡ଼ ପୁଣି ପ୍ରମାଣ କରି ଦେଲେ ଯେ ମଣିଷର ମନ କେବଳ ଯୁକ୍ତି ଅବା ଉଚ୍ଚତର ଭାବ ପ୍ରକାଶତାରେ ପୂର୍ଣ୍ଣ ନୁହେଁ । ତାର ଅଚେତନ ଲୋକର ପାତାଳରେ ରହିଛି ବନ୍ଧ୍ୟ ମନୋବିକାର, ଅସାମାଜିକ ପ୍ରବୃତ୍ତି ଚରିତାର୍ଥ କରିବାର କୁତ୍ସିତ ଲାଳସା । ଏହା ତୃଷ୍ଣାପୂ ଓ ଶେଷଥର ପାଇଁ ମଣିଷ ମନର ସମସ୍ତ ଗାରିମାକୁ ଚୂରମାର କରି ଦେଲା ।

ପ୍ରୟୋଗ କ୍ଷେତ୍ରରେ ଦେଖିଲେ—ବିଜ୍ଞାନ ସମାଜକୁ ପ୍ରତି ସ୍ତରେ ସ୍ତରେ ପରିମାର୍ଜିତ, ପରିବର୍ତ୍ତିତ ଓ ପରିବର୍ଦ୍ଧିତ କରି ଆସୁଛି ବୋଲି ସ୍ୱୀକାର କରିବାକୁ ହେବ । ଏହା ମଣିଷର ପାରିପାର୍ଶ୍ୱିକ ଅବସ୍ଥା ଓ ପ୍ରକୃତିକୁ ବଦଳାଇ ଧରାକୁ ଉପଭୋଗ୍ୟ ଓ ରମଣୀୟ କରିବାର ବାଟ ଦେଖାଇ ଦେଲା । ଆର୍କିମିଡ଼ିସଙ୍କ ବ୍ୟତୀତ ଅନ୍ୟ ସମସ୍ତ ଗ୍ରୀକ କେବଳ ବିଜ୍ଞାନ ସାହାଯ୍ୟରେ ପ୍ରକୃତିକୁ ଜାଣିବାର ଚେଷ୍ଟାରେ ଥିଲେ ମାତ୍ର ; କିନ୍ତୁ ଆରବମାନେ ପ୍ରଥମେ ବିଜ୍ଞାନ ସାହାଯ୍ୟରେ ମଣିଷ ଓ ପ୍ରକୃତିକୁ ବଦଳାଇବାର ଚଳାସରେ ରତ ହେଲେ । ପରଶମଣିର ସନ୍ଧାନ କରିବା ଏହାର ପ୍ରଥମ ଦୃଷ୍ଟାନ୍ତ ।

ବିଜ୍ଞାନର ଏହି ପ୍ରୟୋଗରୁହିଁ ଶାସନର ପଦ୍ଧତି କ୍ରମେ ଦୃଢ଼ୀଭୂତ ହେବାକୁ ଲାଗିଲା । କମ୍ପାସ ଯନ୍ତ୍ର ଓ ବାରୁଦର ଆବିଷ୍କାର ଦିନଠାରୁ

ଶାସନ ଚଳାଉଥିବା ରଥୀମାନେ ଶାସନକୁ ଦୃଢ଼ କରିବାରେ ଏହାର ପ୍ରଭୃତ ବ୍ୟବହାର କରିବାରେ ଲାଗିଲେ । ଶିଳ୍ପ ବିପ୍ଳବ ଫଳରେ ଗମନାଗମନ ପଥ ବହୁ ପରିମାଣରେ ସୁଗମ ହୋଇଗଲା । ବିଦ୍ୟୁତ ଶକ୍ତି, Internal combustion engine, ଟେଲିଗ୍ରାଫ, ଟେଲିଫୋନ ପ୍ରଭୃତି ମଣିଷର ତ ବହୁତ ଉପକାର କଲା । ଏହା କେନ୍ଦ୍ରୀକରଣ ଶାସନର ସମ୍ଭାବନାକୁ ଉଜ୍ଜ୍ୱଳତର କଲା ମଧ୍ୟ । ଏହା ସାଙ୍ଗକୁ ପ୍ରେସ୍, ରେଡ଼ିଓ ଓ ସିନେମା ପ୍ରଭୃତି ପ୍ରଚାର ମାଧ୍ୟମରେ ମଣିଷକୁ ପ୍ରବର୍ତ୍ତାଇବାର କୌଶଳ ବହୁ ସମୃଦ୍ଧ ହୋଇଗଲା । ଏହାର ପରବର୍ତ୍ତୀ ବିକାଶ ଓ ଅଗ୍ରଗତି ଭାବରେ ଉଡ଼ାଜାହାଜ ଆସିଲା ଏବଂ ପରିଶେଷରେ ଆସିଲା ଆଣବିକ ଶକ୍ତି ।

ପ୍ରଥମ ଓ ଦ୍ୱିତୀୟ ମହାଯୁଦ୍ଧରେ ମାରଣାସ୍ତ୍ର ନିର୍ମାଣ କୌଶଳର ଯେଉଁ ବିକାଶ ଘଟିଲା ତାହା ସମାଜକୁ ପ୍ରଥମ କରି ବିଜ୍ଞାନ ବିମୁଖ କରି ପକାଇଲା । ଯୁଦ୍ଧର ଧ୍ୱଂସ ଲୀଳାରେ ବିଜ୍ଞାନର୍ହିଁ ବାହନର ଚେତନର କାମ କଲା । ଏହାର ଚରମ ପରିଣତି ଆକାରରେ ଆସିଲା ହିରୋସୀମାର ବକ୍ଷ ବିଦୀର୍ଣ୍ଣ କରି ପ୍ରଥମ ଆଣବିକ ବୋମା । ଯାହା ସମଗ୍ର ମାନବ ସମାଜ ଆଗରେ ଏକ ମୌଳିକ ପ୍ରଶ୍ନ ଉଠାଇଲା — ପୃଥିବୀର ସମାଜ ରହିବ ନା ଧ୍ୱଂସ ପାଇବ ।

ଆଜି ବି ପୃଥିବୀର ରାଷ୍ଟ୍ରନାୟକମାନଙ୍କ ଆଗରେ ସେଇ ପ୍ରଶ୍ନ । ଶକ୍ତି ସମ୍ଭୋଜିତ ବିଜ୍ଞାନକୁ କି ଉପାୟରେ ପ୍ରୟୋଗ କରିଯିବ ତାହା ଆଜିର ଏ ରାଜନୀତି ପ୍ରଧାନ ଯୁଗରେ ସବୁ ରାଷ୍ଟ୍ରନାୟକମାନଙ୍କ ଆଗରେ ପ୍ରଥମ ପ୍ରଶ୍ନ ହୋଇ ଠିଆ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଆଣବିକ ଶକ୍ତିକୁ ଶାନ୍ତି କପୋତର ଅଗ୍ରଦୂତରୂପେ ବ୍ୟବହାର କରାହେବ ନା ଶୀତଳ ଯୁଦ୍ଧର ମାଧ୍ୟମରୂପେ ସାମରିକ ଚୋଟର

ଘରବାହାର ହୁଏ, ସଭ୍ୟତାର ଧ୍ୱଂସ କଲ୍ପନା ବିନାଯୋଗ କରାହେବ !!
ଏହି ନୀତିଗତ ପ୍ରଶ୍ନକୁ ଆଜି ସମଗ୍ର ମାନବ ଜାତି ଆଗରେ ପ୍ରଶ୍ନବାଚକ
ରୂପରେ ଛିଡ଼ା ହୋଇ ରହିଛି ।

ତା'ହେଲେ ଆଜି ଆଉ ଛଳନା କରି ହେବ ନାହିଁ ଯେ
ବିଜ୍ଞାନ ଉଦ୍ଦେଶ୍ୟ (Purpose) ବା କାମ୍ୟ (End) ସହ ଜଡ଼ିତ
ନୁହେଁ । ବିଜ୍ଞାନ ଆଉ neutral ବା କ୍ଲୀବ ବସ୍ତୁ କିଛି ନୁହେଁ ।
ଏହା ଆଜି ନୀତିର ନିୟାମକ । ଏଚ. ଜି. ୱେଲସ୍ ବିଜ୍ଞାନର
ରଙ୍ଗୀନ ଚଟିଟିକୁ ହାତରେ ଧରି ଯେଉଁ ରମ୍ୟବାଗ କଳ୍ପନାରେ
ମାତି ଯାଇଥିଲେ ତାହା ଆଜି ଯେମିତି ଭୁଷୁଡ଼ି ପଡ଼ିଛି । ଏଇ
କଥାକୁ ଆଖି ଆଗରେ ରଖି ଜର୍ଜ ଅରୱେଲ ତାଙ୍କର ୧୯୮୪
ପୁସ୍ତକ ଓ ହକ୍ସଲେ ତାଙ୍କର Brave New World ପୁସ୍ତକରେ
ବିଜ୍ଞାନ ପରିଚାଳିତ ଯେଉଁ କଳୁଷିତ ସମାଜର ଛବି ଆଙ୍କି
ଦାଇଛନ୍ତି ତାହା ଆଜି ଯେମିତି ସମଗ୍ର ମାନବ ସମାଜକୁ ଏକ
ପ୍ରକାଶ୍ୟ ଆହ୍ୱାନ । ଠିକ୍ ସେଇ ପ୍ରଶ୍ନ—ଅନୁଷ୍ଠାନ ଓ ବ୍ୟକ୍ତି ଅନୁଗତ
ବିଜ୍ଞାନକୁ ତା'ର ନାଗ ଫାଶ ବନ୍ଧନରୁ ମୁକୁଳାଇ ଦିଆଯାଉ ।
ନ ହେଲେ ଏହା ନୀତିକୁ ଅନୀତିରେ ପରିଣତ କରିବ ସିନା—
ନୀତିର ନିୟାମକ ହୋଇ ବିଜ୍ଞାନର ନାମକୁ ସାର୍ଥକ କରି ପାରିବ
ନାହିଁ ।

ଆଜି ଆମମାନଙ୍କୁ ଏହି ଆହ୍ୱାନର ସମ୍ମୁଖୀନ ହେବାକୁ
ପଡ଼ିବ । ଆଣବିକ ଶକ୍ତି ଭଳି ବିଜ୍ଞାନର ପୁଞ୍ଜି ସକଳ ସଭ୍ୟତାକୁ
ରୂପ, ରସ, ଗନ୍ଧ, ଗନ୍ଧର ନୂତନ ବର୍ଣ୍ଣାଳୀର ଭରି ଦବାର ଇଙ୍ଗିତ
ଦେଇ ସୃଷ୍ଟିକୁ ନୂଆ ଅର୍ଥ ଦେଉଥିଲା ବେଳେ ତା'ର ଅପବ୍ୟବହାର
ଯୋଗେ ସଭ୍ୟତା ବିପଦ ସଙ୍କୁଳ ହୋଇପଡ଼ିଛି । ସୃଷ୍ଟି ପ୍ରତି

ବଦଳରେ ଆଜ ଲପୁର ଇଶାରା ଦେଉଛନ୍ତି । ସୃଷ୍ଟି ଯୋଗେ ସ୍ରଷ୍ଟା ଆଜ ଭୟଙ୍କର ଭାବେ ବିପଦ ଗ୍ରସ୍ତ । ଆଜ ମାନବ ଜାତି ଆନ୍ତର୍ମହାଦେଶୀୟ କ୍ଷେପଣାସ୍ତ୍ର ଓ କୃତ୍ରିମ ଉପଗ୍ରହ ମାଧ୍ୟମରେ ପୃଥ୍ୱୀର ଦୂରତମ ପ୍ରଦେଶକୁ ଚକ୍ରବର୍ତ୍ତୀ ରାଜ ଅଭିଯାନ ଆରମ୍ଭ କରିଥିଲା ବେଳେ ଶୀତଳ ଯୁଦ୍ଧ, ରାଜନୀତି ଓ ଅସ୍ତ୍ର ପରୀକ୍ଷା ନାମରେ ଜୀବନ ନାଶର ଅଶ୍ୱମେଧ ଓ ରାଜସୂୟ ଯଜ୍ଞର ପରୀକ୍ଷା କରୁଛି । ବିଜ୍ଞାନ ଆଜ ଇହଧାମ ପରଧାମ ମଧ୍ୟସ୍ଥ ପାର୍ଥକ୍ୟ ଘୁଞ୍ଚାଇ ଦେବାକୁ ଯାଉଥିଲା ବେଳେ ଇହଧାମରେ ଏ ସଙ୍କୀର୍ଣ୍ଣତା ଆଉ ଶୋଭା ପାଉ ନାହିଁ ।

ଆଜ "ism" ବା ବାଦ କଥା ଶୁଣି ଶୁଣି କାନ ବଧିର ହେଲାଣି । କିଏ ଭଲ, କିଏ ଭେଲ ପରୀକ୍ଷା ଲୋଡ଼ା ନାହିଁ । ଅନୁଶୀଳନ କଲେ ହୁଏତ ଅନୁଶୋଚନା ଅବା ଆତ୍ମଗ୍ଲାନି ଆସିବ । କିନ୍ତୁ ସବୁଠାରୁ ବଡ଼ ସତ୍ୟ ହେଉଛି ଯେ ମଣିଷର ଭଲ ହେଉ । ମଣିଷ ଭଲରେ ରହୁ ।

ମୋର କହିବାର କଥା ଏଇଆ ଯେ ଆଜ ଜଗତରେ କେବଳ ଗୋଟିଏ "ବାଦ" କଥା ବିଶ୍ୱରେ ପରସ୍ପରକୁ ମିଶା-ଇପାରେ । ତାହା ହେଉଛି ବିଜ୍ଞାନର ବାଦ । ଅନ୍ୟକଥାରେ କହିଲେ ବୈଜ୍ଞାନିକ ମାନବିକତା ବା Scientific Humanism । ଆଜ ବିଂଶ ଶତାବ୍ଦୀର ସମାଜରେ ବୈଜ୍ଞାନିକ ମାନବିକତାକୁ ଛାଡ଼ି ଅନ୍ୟ ଧର୍ମର କଳ୍ପନା କରିହୁଏ ନାହିଁ । ଫଳତ ବିଜ୍ଞାନହିଁ ଆଜ ସମଗ୍ର ଜଗତର ଧର୍ମ । ଧର୍ମ କୁହନ୍ତୁ, ଅର୍ଥ କୁହନ୍ତୁ, ବା ମୋକ୍ଷ କୁହନ୍ତୁ, ଯାହାକହନ୍ତୁ । ଏହା ଏଇଆ କହେ ଯେ ସବୁରି ଉପରେ ମଣିଷଇ ସତ୍ୟ । ମଣିଷର ଭଲପାଇଁ ଯୁଗେ ଯୁଗେ ମଣିଷର ପ୍ରଜ୍ଞା ଓ ସମସ୍ତ ଧାବନ ନିୟୋଜିତ ହୋଇ ଆସିଛି । ହେବା ଉଚିତ ବି ମଧ୍ୟ ।

ଦେଖିବାକୁ ଗଲେ— ବିଜ୍ଞାନ ପ୍ରଣୋଦିତ ଚିନ୍ତାଧାରା ଆଜିର ବୈଜ୍ଞାନିକ ସମାଜରେ ଏକ ଯୁକ୍ତିଯୁକ୍ତ ଓ ପ୍ରାସଙ୍ଗିକ କଥା ବୋଲି ପ୍ରତିପନ୍ନମାନ ହୁଏ । ବିଜ୍ଞାନ ମଣିଷକୁ ପ୍ରକୃତିଠୁ ଛଡ଼ାଇ ଆଣିଲା । ଗୁଡ଼ିଲା ମଣିଷର ପାଖରେ । ପ୍ରକୃତିର ଗନ୍ତାଘରର op·n s·same ସୂତ୍ରଧର ତା'ର ବାଜିନ ଭଣ୍ଡାରକୁ ଲୁଣ୍ଠନ କଲା । ମଣିଷର କଲ୍ୟାଣରେ ଲଗାଇଲା । ବିଜ୍ଞାନ ସମାଜକୁ ପ୍ରଥମେ ଦର୍ଶାଇଲା ଯେ ଉଦ୍ଦେଶ୍ୟ (ends) ଯେମିତି ଏକ ସାଧନାର ବସ୍ତୁ । ଉପାୟ means) ବି ସେହିପରି ଏକ ସାଧନାର ବସ୍ତୁ । ସାଧନା ଦେଇ ସିଦ୍ଧିଲାଭ କରିହେବ ସିନା ସଂସାର ଉପାୟରେ ତାକୁ ପାଇଁ ହେବ ନାହିଁ । ଏହା ପ୍ରଥମେ ଦର୍ଶାଇଦେଲା ଯେ ଆଜିପର୍ଯ୍ୟନ୍ତ ଯେତେ "ବାଦ" ବା ଚିନ୍ତାଧାରା ଚଳି ଆସିଛି ତନ୍ମଧ୍ୟରୁ ବିଜ୍ଞାନର ଦୃଷ୍ଟିକୋଣ ହେଉଛି ଏକମାତ୍ର ଦୃଷ୍ଟିକୋଣ, ଯହିଁରେ ଆତ୍ମସମୀକ୍ଷା ଓ ଆତ୍ମସମାଲୋଚନା ଦ୍ୱାରା ସେହି ଦୃଷ୍ଟିକୋଣ ଦୃଢ଼ୀଭୂତ ହୁଏ । ଭାଙ୍ଗିଯାଏ ନାହିଁ । ପରୋକ୍ଷରେ ଏହି ଦୃଷ୍ଟିକୋଣ ଆମକୁ ସ୍ୱାଧୀନତା, ସହନଶୀଳତା ଓ କର୍ମପ୍ରେରଣାର ବାଣୀର ଶୁଣାଏ । ଆଜି ମଣିଷର ସ୍ୱବଧାର ବିଜ୍ଞାନକୁ ନିୟନ୍ତ୍ରିତ କରି ପାରୁନାହିଁ ବୋଲି ଅନୁଭୂତି ଲାଗୁଛି । କିନ୍ତୁ ଏ ସମସ୍ୟା ମୂଳସମସ୍ୟା ନୁହେଁ । ବରଂ ଦେଖିବାକୁ ଗଲେ ସମସ୍ୟାଟି ଠିକ୍ ଓଲଟା । ବିଜ୍ଞାନ ଆଜି ସରକାରୀ କଳ, ଶାସନ ଓ ଶାସକ ଗୋଷ୍ଠୀର ଚିନ୍ତାଧାରାଠାରୁ ବେଶୀ ମାନବିକ ଭାବ ଦ୍ୱାରା ପ୍ରଣୋଦିତ । ଏହା ଏକ ସତ୍ୟପାଠ । ଭାବ ରାଜ୍ୟରେ ସଂକୀର୍ଣ୍ଣତା ଆସୁଛି ସତ ; କିନ୍ତୁ ତାହା ରାଜନୀତିର ମଧ୍ୟରୁ, ଶାସନର ମଧ୍ୟରୁ । ସୁତରାଂ ଅସଲ ସମସ୍ୟାଟି ହେଉଛି— ସମାଜର ବିଭିନ୍ନ ଅଂଶ ଓ ଅନୁଷ୍ଠାନ ଗୁଡ଼ିକ ଉପରେ ବିଜ୍ଞାନସହ ସମତାଳ ରଖି ମାନବିକତା ଭାବ ଦ୍ୱାରା ପ୍ରଣୋଦିତ ହେବେ— ତାହାହିଁ ।

ଆଜି ଜାତି ଧର୍ମ ନିର୍ବିଶେଷରେ ସଙ୍ଘନାୟକ, ଯୁବକ ଓ ସଂସ୍କାରକମାନଙ୍କୁ ମୁଁ ନିବେଦନ କରୁଛି— ବିଜ୍ଞାନର ଭବିଷ୍ୟତ ଆଜି ଆପଣମାନଙ୍କ ହାତରେ। ମୁଁ ବ୍ୟକ୍ତି। ମୋ ଭିତରେ କିଛି ସ୍ପୃହା ଅଛି। ମତେ ଆପଣ କର୍ମକୁଶଳତା, ପ୍ରେରଣା ଓ ଚେଷ୍ଟାର ସୁଯୋଗ ଦିଅନ୍ତୁ। ଜଣେ ସାଧାରଣ ମାନବ ହିସାବରେ ମତେ ମୋର ଜୀବନରେ ସ୍ଥାୟିତ୍ୱ ବା securityର ପ୍ରତିଶ୍ରୁତି ଦିଅନ୍ତୁ। ଜୀବନର ତୀର୍ଥଯାତ୍ରାରେ ଖାଦ୍ୟପେୟ, ବାସସ୍ଥାନ, ଔଷଧ ପରିଧାନ ଓ ମନର ବିକାଶ ପାଇଁ ଅନିଶ୍ଚିତତାର ଦୋଳାରେ ଝୁଲିବାର ଅବକାଶକୁ ହତ୍ୟା କରନ୍ତୁ। ଏକ ସଙ୍ଗଠନର ଅଂଶ ବିଶେଷ ଭାବରେ ସମାଜର କଲ୍ୟାଣରେ ଅଂଶୀଦାର ହେବାର ସୁଯୋଗ ଦିଅନ୍ତୁ। ସମଗ୍ର ବିଜ୍ଞାନର ପୁଞ୍ଜିଭୂତ ସଫଳତା ଆପଣମାନଙ୍କ ହାତରେ।

ପରିଶେଷରେ ଆପଣମାନଙ୍କୁ ମୋର ନିବେଦନ—ଆପଣମାନେ ଏକ ବୈଜ୍ଞାନିକ ସମାଜର ପରିକଳ୍ପନା କରୁଛନ୍ତି। ଏକ ନୂତନ ସମାଜ-ବିଜ୍ଞାନର ସ୍ୱପ୍ନ ଦେଖୁଛନ୍ତି। ମୋର ଆପଣଙ୍କୁ ଅନୁରୋଧ, ଆଧୁନିକ ସମାଜର ପରିଧି ଉପରେ ଆପଣ ଆଜି ବିଜ୍ଞାନର ଚଳପଥରେ ସ୍ୱାଧୀନତା ଓ ଶାନ୍ତିର ନୂତନ ସଂଜ୍ଞାଟିଏ ସ୍ଥିର କରନ୍ତୁ।

---

# ବିଜ୍ଞାନ ଓ ବୈଜ୍ଞାନିକ

ବିଜ୍ଞାନର ସଂଜ୍ଞା ନିରୂପଣ କରିବା ମୋ ପକ୍ଷରେ ଧୃଷ୍ଟତା ହେବ । କାରଣ ବିଗତ ପାଞ୍ଚଶତାବ୍ଦୀ ଧରି ଯେଉଁ ପ୍ରବାହ ଆମର ଜୀବନକୁ ଓତଃପ୍ରୋତ ଭାବରେ ଜଡ଼ାଇ ରଖିଛି ସେହି ପ୍ରବାହର ବିରାଟ ଭାଷାକୋଷକୁ ଏହା ତହିଁ ମଧ୍ୟସ୍ଥ ଗୋଟିଏ ଶବ୍ଦ ସାହାଯ୍ୟରେ ବର୍ଣ୍ଣନା କରିବାର ପ୍ରୟାସ ଭଳି ହାସ୍ୟାସ୍ପଦ ହୋଇଯିବ । ନା—ସଂଜ୍ଞାଟିଏ ଦେଇ ମୁଁ ଏହାର ଅର୍ଥ ସଂକୁଚିତ କରିବାକୁ ଚାହେଁ ନାହିଁ ।

ଆଧୁନିକ ଜୀବନର ପରିଚୟରେ ଯଦି କିଛି ସ୍ୱୟଂପ୍ରକାଶ ସତ୍ୟ ଥାଏ, ଯାହାକୁ ଆମେ ସ୍ୱତଃସିଦ୍ଧ ବା A priori ଅନ୍ତର୍ଭୂତବୋଧ ବା Categorical imperative ବୋଲି କହିପାରୁ, ତାହା ହେଉଛି "ବିଜ୍ଞାନ" । 'ଗୀତା'ରେ ଆମକୁ କୁହାଯାଇଛି ଯେ, ସାରା ଜୀବନର ତୀର୍ଥଯାତ୍ରା ମଧ୍ୟରେ ଆମେ କେତେକ ସଂସ୍କାର ସଞ୍ଚୟ କରୁ ; ମାତ୍ର ଅବଶ୍ୟ ଗୀତା ପରି ଗ୍ରନ୍ଥସାରରୁ ଉଲ୍ଲେଖ କରୁଥିବା କାରଣୁ ଆପଣମାନେ ମୋତେ କ୍ଷମା ଦେବେ । କାରଣ ଗୀତା ଭଳି ଗୋଟିଏ କ୍ଷୀରସିନ୍ଧୁକୁ ମୁଁ ମନ୍ଥନ କରିଛି ବୋଲି ଛଳନା କରୁନାହିଁ । ହୁଏତ ମୋର ଏ ଉଲ୍ଲେଖ ଭୁଲ ହୋଇପାରେ । କିନ୍ତୁ ମୋର କହିବାର କଥା ଏଇଆ ଯେ, ଆଧୁନିକ ଜୀବନର ସଂସ୍କାର ହେଲା "ବିଜ୍ଞାନ" ।

ସୁତରାଂ ସେଇ ନଜରରୁ ଯଦି ଟିକିଏ ଦୁଃସାହସିକତାର ସହିତ ବତାଇ ଦେବାକୁ ଆପଣ ମୋତେ ଆଉ ଟିକିଏ ପ୍ରଶ୍ରୟ ଦିଅନ୍ତୁ, ତା'ହେଲେ ମୁଁ କହିବି ଯେ ଆମର ବା ଆଧୁନିକ ଜୀବନର ଯଦି କିଛି ସ୍ୱଧର୍ମ ବୋଲି ଥାଏ, ତେବେ ତାହା ହେଉଛି, "ବିଜ୍ଞାନ ।" ସ୍ୱଧର୍ମର ଯେମିତି ଗୋଟିଏ ଅବାଧତା ବା ଅପରିହାର୍ଯ୍ୟତା ଅଛି, ସେଇମିତି ବିଜ୍ଞାନ ଆଧୁନିକ ଜୀବନର ଏକ ଅପରିହାର୍ଯ୍ୟ ଅଙ୍ଗ ।

ତା'ହେଲେ ଗତ ପାଞ୍ଚ ଶତାବ୍ଦୀ ଧରି ଯେଉଁ ଭାଷ୍ୟକାରମାନେ ଆମକୁ ଏଇ ସ୍ୱଧର୍ମ ଓ ସଂସ୍କାରର ଟୀକା ବା ଅନ୍ୱୟ ଶୁଣାଇ ଆସିଛନ୍ତି—ଯେଉଁ ଧର୍ମଯାଜକମାନେ ଆମର ଜୀବନଯାତ୍ରାର ମଙ୍ଗଳାମଙ୍ଗଳ ପୀଠରେ ଆମକୁ ପୁଣ୍ୟବାଣୀ ପଢ଼ାଇ ଆସିଛନ୍ତି, ସେହି ମହାପୁରୁଷ ବୈଜ୍ଞାନିକମାନେ ହିଁ ଆଧୁନିକ ଯୁଗର ବ୍ୟାସଦେବ । ତାଙ୍କରି ଉପରେ ହିଁ ଆମେ ଆଧୁନିକ ଜୀବନର ଜୀବନକଳା ବା ଯୋଗ ଅଧ୍ୟୟନ କରୁଛୁ । ତାଙ୍କର ବିଜ୍ଞାନ ହିଁ ଆମର ଗୀତାପାଠ । ଚାଲନ୍ତୁ ଏଇ ଗୀତାର କେତେକ ପୁରୁଣା ଅଧ୍ୟାୟ ଖଣ୍ଡିଏ ପାଇଁ ଟିକିଏ ଓଲଟ ପାଲଟ କରିବା ।

ମଧ୍ୟଯୁଗ । —ଅବଶ୍ୟ ସଭ୍ୟତାର "ଆଦ୍ୟ-ମଧ୍ୟ-ପ୍ରାନ୍ତ" ବା "ପୁରାତନ-ମଧ୍ୟ-ଆଧୁନିକ" ଏଭଳି କୃତ୍ରିମ ଶ୍ରେଣୀ ବିଭାଗ ଅଛି କି ନାହିଁ ମୁଁ କହୁ ନାହିଁ । କିନ୍ତୁ ଷୋଡ଼ଶ ଶତାବ୍ଦୀ ପୂର୍ବରୁ ଅର୍ଥାତ ଏକାଦଶ ଶତାବ୍ଦୀ ଓ ଷୋଡ଼ଶ ଶତାବ୍ଦୀ ମଧ୍ୟରେ ଯେତେବେଳେ ଧର୍ମ ପୁରାତନ ବିଜ୍ଞାନ ଓ ଦର୍ଶନର ଜାଗା ମାଡ଼ି ବସିଥିଲା, ଯାହା ପରେ ଇଉରୋପରେ କ୍ରୁସେଡ଼ (Crusade ଓ ସଂସ୍କାର (Reformation ଆନ୍ଦୋଳନ ଉପରେ ଧର୍ମ ଓ ବିଜ୍ଞାନ ମଧ୍ୟସ୍ଥ ଦ୍ୱନ୍ଦ୍ୱ ଖାଲି ତୀବ୍ରତର ହୋଇଥିଲା, ଏକ ନାସ୍ତିକ ପ୍ରଜ୍ଞାବାଦ (ଅପ୍ରାସଙ୍ଗିକ

ବିଶ୍ୱାସର ସମଷ୍ଟି ଭାବନା ବିଜ୍ଞାନକୁ ଜଡ଼ାଇ ରଖିଥିଲା—ସେତେ-ବେଳେ ସୃଷ୍ଟିକୁ ଆମେ କି ରୂପରେ ଦେଖିଲୁ ? ସେତେବେଳେ ସୃଷ୍ଟି ସ୍ରଷ୍ଟାର ଗୋଟିଏ ପାଣ୍ଡୁଲିପି ମାତ୍ର । ଏଠି ସବୁଠାରେ ସ୍ରଷ୍ଟାର ଇଚ୍ଛାଦ୍ୱାର ଆଉ ସ୍ୱାକ୍ଷର । ପ୍ରତ୍ୟେକ ବସ୍ତୁର ଆଦର୍ଶ ଧର୍ମ ଅଛି । ତେଣୁ ସେମାନଙ୍କର ବ୍ୟବହାର ସେହି ଆଦର୍ଶ ଧର୍ମ ସାହାଯ୍ୟରେ ବୁଝାଇ ଦିଆଯାଉଥିଲା । ଏ ଜଗତର ବ୍ୟାଖ୍ୟାରେ ସବୁଠାରେ ଆରିଷ୍ଟଟଲଙ୍କ ଛାପ । ଭର (Mass) ପୃଥିବୀର କେନ୍ଦ୍ର ଆଡ଼େ ବିଶ୍ରାମ ଖୋଜେ । ସୁତରାଂ ତାହା ଭୂତଳକୁହିଁ ପତିତ ହେବ । ଏପରି ସ୍ଥଳେ ମାଧ୍ୟାକର୍ଷଣ କାହିଁ ସମ୍ଭବିବ !! ବାୟୁର ଆଦର୍ଶ ପ୍ରକୃତି ବ୍ୟୋମ ବା ଅନ୍ତରୀକ୍ଷରେ ।··· ଏପରି ଭାବରେ ସବୁଠାରେ ବ୍ୟାପିଥିଲା ଏକ ଆଦିମ Animism ବା Anthropomorphism (ଅ-ନରରେ ନରତ୍ୱ ଆରୋପ । ପ୍ରତ୍ୟେକ ବସ୍ତୁର ଏକ ଅନ୍ତର୍ଗୁଣ ଶୃଙ୍ଖଳା, ଧର୍ମ ବା ବାଧକତା ଅଛି । ସୁତରାଂ ମଧ୍ୟଯୁଗରେ ପ୍ରକୃତିର ସମସ୍ତ ବେଗ ଆଉ ଗତିଶୀଳତା ଏହି ଆଭ୍ୟନ୍ତରଣ ଆଦର୍ଶକୁ ଚରିତାର୍ଥ କରିବା ଦିଗରେ ସତତ ଧାବମାନ । ଏକ କଥାରେ "କାହିଁକି"ର ପ୍ରଶ୍ନହିଁ ମୁଖ୍ୟ ଥିଲା ।

ଲିଓନାର୍ଡୋ-ଡା ଭିନ୍‌ସିଙ୍କ କଥା ଉଲ୍ଲେଖ କରାଯାଉ । ପଞ୍ଚଦଶ ଶତାବ୍ଦୀର ଶେଷଭାଗରେ ଏହି ଅଦ୍ଭୁତ ଗୁଣାଗାର ଏକାଧାରରେ ଶିଳ୍ପୀ, ଚିତ୍ରକର, ବୈଜ୍ଞାନିକ, ଇଞ୍ଜିନିୟର, ଡାକ୍ତର, ପଦାର୍ଥବିତ୍, ଜୀବନବିଜ୍ଞାନବିତ୍ ଓ ଦାର୍ଶନିକ ଥିଲେ । ତାଙ୍କପରି ଖୁବ୍ କମ ଜ୍ଞାନୀ (genius) ପୃଥିବୀର ଜନ୍ମଲାଭ କରିଛନ୍ତି । ପ୍ରିନ୍‌ସ (Prince) ଲେଖକ ମାକିଆଭେଲି (Machiavalli) ଥରେ ତାଙ୍କ ନିକଟକୁ ଲେଖିଥିଲେ—"ଆପଣଙ୍କର ଓ ମୋର ଭାଗ୍ୟ ଏକା ।

—ନୂତନ ସଙ୍ଗୀତ ଆବିଷ୍କାର, ନୂତନ ଦେଶ ଆବିଷ୍କାରଠାରୁ ଆହୁରି ଖ୍ୟାପଣ ଓ ବିପଦଜନକ ।” କିନ୍ତୁ ଏହି ମନୀଷୀଙ୍କର ନୋଟ୍ ବହିଆଡ଼େ ଆଖି ପକାଇଲେ କ’ଣ ଦେଖିବାକୁ ମିଳେ ? ପ୍ରକୃତି ବିଷୟରେ ତାଙ୍କର କୌତୁହଳତା ଓ ଆଗ୍ରହ କେବଳ ପ୍ରକୃତିର ବୈଚିତ୍ର୍ୟ ଦେଖିବାକୁ ଥିଲା । ସେ ଯନ୍ତ୍ର ତିଆରି କରୁଥିଲେ ; କିନ୍ତୁ ଏହି ଯନ୍ତ୍ରଗୁଡ଼ିକ ସେ ଯାହା ଚାହୁଁଥିଲେ ସେହି ଘଟଣା ବା ପ୍ରଭାବ ସୃଷ୍ଟି କରିବା ପାଇଁ ସୃଷ୍ଟି ହୋଇଥିଲା । ଏକ କଥାରେ ଏଠି ବିଜ୍ଞାନର ଧାରା ନ ଥିଲା ।

ଏହା ସହିତ ଷୋଡ଼ଶ-ସପ୍ତଦଶ ଶତାବ୍ଦୀର ମନୀଷୀ, ବିଜ୍ଞାନ ଯୁଗର ପ୍ରଥମ ଅଗ୍ରଦୂତ ଆଇଜାକ୍ ନିଉଟନଙ୍କ କଥା ତୁଳନା କରନ୍ତୁ । ସେ ଖଗୋଳ ବିଜ୍ଞାନର ଚର୍ଚ୍ଚା କରୁଥିଲେ । କାରଣ ତାହା ମଧ୍ୟରେ ଏକ ଏକତ୍ୱ ଓ ପ୍ରକୃତିର ଶୃଙ୍ଖଳା ଲୁକ୍କାୟିତ ଥିଲା । ସେ ପରୀକ୍ଷା (experiment) କରୁଥିଲେ, କାରଣ ସେ ପର୍ଯ୍ୟବେକ୍ଷଣ କରିବାକୁ ଚାହୁଁଥିଲେ । ସେ କୌଣସି ପ୍ରଭାବ (effect) ଦେଖିଲେ ତାହାର କାରଣ ବା ଶୃଙ୍ଖଳା ଅନୁସନ୍ଧାନ କରୁଥିଲେ । ସେହି କାରଣ ବା ଶୃଙ୍ଖଳାରୁ ପୁଣି ନୂତନ ପରୀକ୍ଷା ସଙ୍ଗଠିତ କରୁଥିଲେ । ଏକ କଥାରେ ଘଟଣାବଳୀର କାର୍ଯ୍ୟ-କାରଣ ସମ୍ପର୍କରେ ଦୃଷ୍ଟି ଉପରେ ସେ ପ୍ରକୃତିର ଭବ୍ୟତା ଓ ଏକତ୍ୱ ଖୋଜିଲେ । ଏଇଠୁ ବିଜ୍ଞାନର ପର୍ଯ୍ୟାୟ ଆରମ୍ଭ ।

ସୁତରାଂ ଅଭ୍ୟୁଦୟ ଯୁଗରେ ଆମେ ଦେଖିବାକୁ ପାଇଲୁ ଯେ ସ୍ରଷ୍ଟାର ଏଇ ଯେ ପାଣ୍ଡୁଲିପି ତାହା ଏକ ଅଜଣା ଓ ଅବୋଧ୍ୟ ହରଫରେ ଲେଖା ଯାଇଛି । ତାକୁ ପ୍ରକାଶ କରିହେବ ନାହିଁ । ତା’ର ଭାଷାର ପରିବର୍ତ୍ତନ ଲୋଡ଼ା । “କାହିଁକି”ରୁ “କିପରି” ଖୋଜିବାକୁ ହେଲେ ଭାଷାର ଯେଉଁ ପରିବର୍ତ୍ତନ ଲୋଡ଼ା ସେଇ ପରିବର୍ତ୍ତନ ।

ଏଇ ଗ୍ରନ୍ଥାକୁ ଅନୁବାଦ କରିବାର ଅଧିବସାୟ ଆଜି ତା'ର ପ୍ରଥମ ପ୍ରକାଶ ନିଉଟନଙ୍କ ବ୍ୟକ୍ତିତ୍ୱ ମଧ୍ୟରେ । କପରନିକସ୍, କେପ୍‌ଲର୍ ଓ ଗାଲିଲିଓଙ୍କଠାରେ ଯାହା ଅଭାବ ଥିଲା ତାଙ୍କଠାରେ ତାହା ପରିସ୍ଫୁଟ ହେଲା । ପୁଣି ଡେକାର୍ଟେଙ୍କ ଅନ୍ୱିକ୍ଷା (Logic) ପ୍ରଣାଳୀ ଓ ବାକନ୍‌ଙ୍କ ପରୀକ୍ଷା ପ୍ରଣାଳୀ, ଏଇ ଦୁଇ ପ୍ରବଣତାର ଏକ ଅଦ୍ଭୁତ ସମନ୍ୱୟ ତାଙ୍କଠାରେ ଘଟିଥିଲା । କପର୍‌ନିକସ କେବଳ ଗାଣିତିକ ସମନ୍ୱୟ ଦୃଷ୍ଟିରୁ ତାଙ୍କର ଗ୍ରହଗୁଡ଼ିକର ଗତି ସମ୍ବନ୍ଧୀୟ ନିୟମଗୁଡ଼ିକ ଦେଇଥିଲେ । କେପଲର ଓ ଗାଲିଲିଓ ଏହାକୁ ଗ୍ରହଣ କରିଥିଲେ, କେବଳ ଏ ନିୟମର ଗାଣିତିକ ସୌନ୍ଦର୍ଯ୍ୟ (Aesthetic Charm) ଦୃଷ୍ଟିରୁ । କେପ୍‌ଲରଙ୍କ ବିଶ୍ୱଧାରଣା ଅନୁସାରେ ବସ୍ତୁ ମଧ୍ୟସ୍ଥ ପରସ୍ପର ଗାଣିତିକ ସମ୍ପର୍କ ଖୋଜି ପାଇଲେ ସ୍ରଷ୍ଟାର ଉଦ୍ଦେଶ୍ୟ ସମ୍ପର୍କରେ ଧାରଣା କରିହେବ । କିନ୍ତୁ ନିଉଟନ ଏ ସବୁକୁ ଗୋଟିଏ ନିଆ ଦିଗଦର୍ଶନ ଦେଲେ । ପର୍ଯ୍ୟବେକ୍ଷଣ ଓ ପରୀକ୍ଷା ତାଙ୍କ ବିଜ୍ଞାନର ମୂଳଦୁଆ ଥିଲା । ଏହାର ଫଳାଫଳ ଉପରେ ବସ୍ତୁ ମଧ୍ୟସ୍ଥ ଗାଣିତିକ ସମ୍ପର୍କ ସ୍ଥିର ହେବ ଓ ଏହି ଗାଣିତିକ ସମ୍ପର୍କ ଭୁଲ କି ଠିକ୍ ପୁଣି ନୂତନ ପରୀକ୍ଷାଦ୍ୱାରା ତାହା ପ୍ରମାଣିତ ହେବ ।

ସୁତରାଂ ଗୀତାର ଗୋଟିଏ ପରିଭାଷା ବ୍ୟବହାର କରିବାକୁ ଆପଣ ଯଦି ଅନୁମତି ଦିଅନ୍ତି ତା' ହେଲେ ମୁଁ ଏଇଠି କହିବି ଯେ ନିଉଟନଙ୍କ ପରଠାରୁ "ବିଜ୍ଞାନ" ବୋଲି ଏ ଯେଉଁ ଆମର ସ୍ୱଧର୍ମ, ତା'ର ନିର୍ଗୁଣ ଉପାସନା ଆରମ୍ଭ ହୋଇଗଲା । ଯେମିତି ରାମାୟଣର ଭରତ ଆଉ ମହାଭାରତର ଅର୍ଜୁନର ସାଧନା । ସାଧନାର ନିର୍ଲିପ୍ତତା ଆଉ ତତ୍ତ୍ୱନିଷ୍ଠତା ଏହାର ବୈଶିଷ୍ଟ୍ୟ । ପରୀକ୍ଷା ଓ ମନର ସାହାଯ୍ୟରେ ବସ୍ତୁ ବା ଘଟଣାବଳୀର ସମ୍ପର୍କ ଅନୁସନ୍ଧାନ ଏହାର ଅନ୍ୟ ନାମ ।

କିନ୍ତୁ ଏଇ ସାଧନା ଫଳରେ ଦେଖାଗଲା ଯେ ଆମେ ସ୍ରଷ୍ଟାର ଯେଉଁ ପାଣ୍ଡୁଲିପିଟି ଅଧ୍ୟୟନ କରିବାକୁ ଚେଷ୍ଟା କରୁଥିଲୁ—ତହିଁରେ ସ୍ରଷ୍ଟାର ଚରିତ୍ର ବି ବଦଳି ଯାଇଛି । ସୃଷ୍ଟି କଥା ଛାଡ଼ । ସ୍ରଷ୍ଟା ଆଜି ଅବୋଧ ନୁହେଁ—ସେ ଏକ ଗାଣିତିକ ମାତ୍ର । ଲାପଲେସ୍ ସେଦିନ ଖୁବ୍ ଦମ୍ଭରେ ଚିତ୍କାର କରି ଉଠିଥିଲେ—"ମୁଁ ସ୍ରଷ୍ଟାଙ୍କୁ ଭଲ ଭାବେ ଚିହ୍ନେ । ସେ ଜଣେ ଗଣିତ ବିଶାରଦ ମାତ୍ର । ଆଜି ସେଇ ସ୍ରଷ୍ଟାର ଯେଉଁ ପାଣ୍ଡୁଲିପିଟି ପଢ଼ିଛୁ, ତା'ର ଭାଷା ଅତି ସହଜ । "କାର୍ଯ୍ୟ-କାରଣ"ହିଁ ତା'ର ଭାଷା । ଆଉ ସେହି ପାଣ୍ଡୁଲିପିଟି ହିଁ ଗୋଟିଏ ବିରାଟ ଯନ୍ତ୍ର ବିଶେଷ ।" ଲର୍ଡ଼ କେଲ୍‌ଭିନ୍ ଏଇ କଥାହିଁ କହିଥିଲେ – ଯାହାର ଯାନ୍ତ୍ରିକ ମଡ଼େଲ ନାହିଁ ସେ ତାକୁ ବୁଝି ପାରିବ ନାହିଁ ।

ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀର ଆବିଷ୍କାର ଓ ଉଦ୍ଭାବନ ସକଳ ଏଇ ପାଣ୍ଡୁଲିପିର ଗନ୍ତାଘରର ସବୁ ଧନ ଆମ ଆଗରେ ଫିଟାଇଦେଲା । ଜୀବନର ସମସ୍ତ ସମ୍ଭାବନା ଓ ବିସ୍ତାର ଆମ ସମକ୍ଷରେ ପରିସ୍ଫୁଟ ହେଲା । ମୋଟ ଉପରେ ଜୀବନର ଏକ ପରି-ବର୍ତ୍ତିତ ମୂଲ୍ୟବୋଧର ଦୃଢ଼ଭିତ୍ତି ସ୍ଥାପନ ହୋଇଗଲା । ଆମେ ବିଦ୍ୟୁତଶକ୍ତିର ଧର୍ମ ଜାଣିଲୁ । ଟେଲିଫୋନ, ଟେଲିଗ୍ରାଫ, ରେଡ଼ିଓ ଓ ବେଗମନ୍ତ ଯାନ ବ୍ୟବହାର କରିପାରିଲୁ । ରୋଗନିଦାନ ଶାସ୍ତ୍ର—ବୀଜାଣୁ ଓ କୀଟତତ୍ତ୍ୱ ବିଷୟରେ ସମ୍ୟକ ଜ୍ଞାନ ଲାଭ କଲୁ । ଉଦ୍ଭିଦ-ବିଦ୍ୟା—ହର୍ମୋନ, ବୀଜସଞ୍ଚରଣ, କଲମି କରିବା ଇତ୍ୟାଦି ବିଷୟରେ ଜାଣିଲୁ । ଖଣିଜ ପଦାର୍ଥରୁ ବିଶୁଦ୍ଧ ଧାତୁ ପୃଥକ କରି ପାରିଲୁ । ସାବୁନ ଶିଳ୍ପ, ରବର ଶିଳ୍ପ, କୃତ୍ରିମ ଘୃତ ଉତ୍ପାଦନ, କାଚ ଶିଳ୍ପ, ରଙ୍ଗଶିଳ୍ପ ପ୍ରଭୃତିର ଅଭିବୃଦ୍ଧି କଲୁ । ମୃତ୍ତିକା ପରୀକ୍ଷା,

ପ୍ରାକୃତିକ ପାରିପାର୍ଶ୍ୱିକ ଅବସ୍ଥା, ପାଣିପାଗ ଓ ଜଳବାୟୁ ବିଷୟରେ ଜାଣିଲୁ । ଜୀବନର ସାର କ୍ୟବହାର ସୂତ୍ର ପାଇଲୁ । ସମ୍ଭାବନା ପସରାର ଶହେଆଠ ଶ୍ରୀ ଆମ ଆଗରେ ମୁକୁଳା ହୋଇଗଲା ।

ଏଇ ସମସ୍ତ ଅଗ୍ରଗତିର ପରିପୂର୍ଣ୍ଣ ବିକାଶ ଊନବିଂଶ ଶତାବ୍ଦୀର ଶେଷ ଅବଦାନ ରଞ୍ଜନରଶ୍ମି (୧୮୯୫ ମସିହା) ମଧ୍ୟରେ । ଯାହା-ଦ୍ୱାରେ ସେଲ୍ୟୁଲଜ, କେରାଟିନ ଓ ମାଇଓସିନ ପ୍ରଭୃତି ତନ୍ତୁଜାତୀୟ ବସ୍ତୁର ଗଠନ ପ୍ରଣାଳୀ ଜାଣିଲୁ । ଫଳରେ ରୋଗ ନିଦାନରେ ବହୁତ ନୂତନ ପ୍ରଣାଳୀ ଆବିଷ୍କୃତ ହେଲା । କୃତ୍ରିମ ଉପାୟରେ ଜୀବ ମଧ୍ୟରେ ଆକସ୍ମିକ ପରିବର୍ତ୍ତନ (mutation) ସଙ୍ଗଠନ କରି ପାରିଲୁ । ଫଳରେ ଉଦ୍ଭିଦବିଦ୍ୟାର ଆହୁରି ବଢ଼ତି ହେଲା । ସ୍ଫଟିକବିନ୍ୟାସ (Crystal Structure) ନିରୂପଣ କରିପାରିଲୁ । ଫଳରେ ଧାତୁ ଓ ଖଣିଜପଦାର୍ଥର ବିଧିବଦ୍ଧ ଅନୁଶୀଳନ ସମ୍ଭବ ହେଲା । ବିଶ୍ୱକୁ ବୁଝିବା ପାଇଁ ଆମେ ଯେଉଁ ସମୀକରଣ (Equation)ର ସାହାଯ୍ୟ ନେଇଥିଲୁ ସେଇ ସମୀକରଣର ଅଜଣା "X" (ଏକ୍ସ)ର ତାତ୍ପର୍ଯ୍ୟ ଏବଂ 'X ray' ବା ରଞ୍ଜନ-ରଶ୍ମିର ସାହାଯ୍ୟରେ ବହୁ ପରିମାଣରେ ସମାଧାନ ହୋଇଗଲା ।

ମୋଟ ଉପରେ ଏ ଯୁଗରେ ଆମେ ହନୁମାନର ଗନ୍ଧମାର୍ଦ୍ଦନ ର ତଳକୁ ଖସାଇ ପକାଇଲୁ । ଅକ୍ଷୟତୂଣୀର, ଗାଣ୍ଡିବ ଧନୁ ଓ ପାଶୁପତ ଅସ୍ତ୍ର ବି ଲଭିକଲୁ । ଏହା ହିଁ ଅଷ୍ଟାଦଶ ଶତାବ୍ଦୀର ଆଶାବାଦ ଓ ରମ୍ୟବିଳାସର କାରଣ । ଏଠି ସ୍ରଷ୍ଟା ବୋଲି ଯେଉଁ ଗଣିତଜ୍ଞଟି ତା'ର ପୂର୍ଣ୍ଣ ପରିଚୟ ପାଇଲୁ । ତା'ର ପାଣ୍ଡୁଲିପି ରୂପକ ଯନ୍ତ୍ରଟିର କାର୍ଯ୍ୟକାରଣ ରୂପୀ ଭାଷା ପଢ଼ିଲୁ । ସୁତରାଂ ସବୁ ସୁଲଭ, ସହଜ ଆଉ ସ୍ପଷ୍ଟ । ସୃଷ୍ଟିର ସ୍ୱାଚ୍ଛନ୍ଦ୍ୟତା, ବ୍ୟବସ୍ଥିତତା,

ସମତା ଆଉ ବନ୍ଧନ ମୁକ୍ତତା—ସବୁ । ଏ ଆଶୀର୍ବାଦ ଆଉ ଉପଲବ୍ଧିର କାରଣ ହେଉଛି ଏଇଆ ଯେ "ସୁବର୍ଣ୍ଣଯୁଗ" ଆସୁଛି । ସୁବର୍ଣ୍ଣଯୁଗ ଆଗତପ୍ରାୟ । ତାହାର ସ୍ୱାଗତ ସମ୍ବର୍ଦ୍ଧନା କରିବାକୁ ପଡ଼ିବ । ଜୀବନର ରେଳ ଜଙ୍କସନରେ ସେଇ ସୁବର୍ଣ୍ଣଯୁଗର ସଙ୍କେତ ସିଗ୍‌ନାଲ୍ ପଡ଼ିଗଲଣି । ସୁବର୍ଣ୍ଣଯୁଗ ଖୁବ୍ ନିକଟରେ ଆସିବ । ଏହା ଏକ ଧ୍ରୁବ ଓ ସତ୍ୟପାଠ ।

ସୁତରାଂ ଏ ଯୁଗରେ ଆମେ ଅଦ୍ଭୁତ ମାନବ । ଚନ୍ଦ୍ରର ପ୍ରଥମ ନାଗରିକ । ଗ୍ରହର ବାସିନ୍ଦା । ଦୂର ସରଗର ରାଜମିସ୍ତ୍ରୀ । ବିଦ୍ୟୁତ ଶକ୍ତି ଆମର କଣ୍ଟ୍ରୋଲ । ରଞ୍ଜନ ରଶ୍ମି ଆମର ସେନାପତି । ଶିଳ୍ପର ଅସରନ୍ତି ପ୍ରୟୋଗ ଆମର ମନ୍ତ୍ରୀ । ବିଜ୍ଞାନ ଆମର ଗୋବର୍ଦ୍ଧନଗିରି । ସୁତରାଂ ଆମେ ସୁବର୍ଣ୍ଣଯୁଗର ମାଙ୍ଗଳିକା ଓ ସ୍ୱାଗତିକା ଗାଇ ଗାଇ ଆତ୍ମହରା ଆଉ ଅତିଷ୍ଠ ।

କିନ୍ତୁ ବିଂଶ ଶତାବ୍ଦୀର ଏଇ ସୁବର୍ଣ୍ଣଯୁଗର ସ୍ପଷ୍ଟ ଚିତ୍ର ଯେତେବେଳେ ଆମ ଆଖି ଆଗରେ ଉଦ୍ଭାସିତ ହୋଇଗଲା, ସେତେବେଳେ ଆମେ ଦେଖିଲୁ ଯେ ସେଇ ପାଣ୍ଡୁଲିପିର ଭାଷା ଓ ଢଙ୍ଗ ବଦଳି ଯାଇଛି । ତା' ସାଙ୍ଗେ ସାଙ୍ଗେ ସ୍ରଷ୍ଟାର ଛବିଟି ବି ଏବଂ ଚମତ୍କାର କଥା ଏଇଆ ଯେ, ତା ସାଙ୍ଗରେ ଆମେ ଆବିଷ୍କାର କଲୁ ଆମର ସାଧନ ପ୍ରଣାଳୀ, ଇଆ ଭିତରେ ବି ବଦଳି ଯାଇଛି । ନିର୍ଗୁଣ ଉପାସନାରୁ ତାହା ସଗୁଣ ଉପାସନାରେ ପରିଣତ ହୋଇଛି । ଆମେ 'ଭରତ'ରୁ 'ଲକ୍ଷଣ' ଓ ଅର୍ଜୁନରୁ 'ଉଦ୍ଧବ'ରେ ପରିଣତ ହୋଇ ଯାଇଛୁ ।

ଏଇ ଇତିବୃତ୍ତି ଖେଳାଇଲେ ଆମକୁ ଆମର ସ୍ୱଧର୍ମ ବିଜ୍ଞାନର ଅଭିବୃଦ୍ଧି ବିଷୟ ଆଉ ଟିକିଏ ଅନୁଧ୍ୟାନ କରିବାକୁ ପଡ଼ିବ ।

ଊନବିଂଶ ଶତାବ୍ଦୀରେ, ବିଶେଷ କରି ଡାରଉଇନଙ୍କ ଯୁଗାନ୍ତକାରୀ ମତବାଦର ପ୍ରବର୍ତ୍ତନ ପରେ ଆମେ ପ୍ରଥମ କରି ସଚେତନ ହେଲୁ ଯେ— ମୃତ୍ୟୁ ଜୀବନର ଏକ ପ୍ରାୟୋଗିକ ଆବଶ୍ୟକତା । ପ୍ରକୃତିର ଦୁଇ ଆବଶ୍ୟକତା—ବଂଶ ପ୍ରଜନନ ଓ ବ୍ୟକ୍ତିଗତ ଶାଶ୍ୱତ ଜୀବନ —ଏଇ ଦୁଇ ସମସ୍ୟାର ସମାଧାନ ମୃତ୍ୟୁ ଆବିଷ୍କାର ଫଳରେ ସମ୍ଭବ ହୋଇଛି । ମୃତ୍ୟୁ ବିନା ଜୀବାର ଗଠନ ସ୍ତରରେ ଅଗ୍ରଗତି ଅସମ୍ଭବ । ସବୁ ଏକକୋଷ ପ୍ରାଣୀ ଅମର । ଯେମିତି ପ୍ରୋଟୋଜଆ (Protozoa) । କୋଷର ବିଭାଗ ଫଳରେ ଏଗୁଡ଼ିକ ବଂଶବୃଦ୍ଧି କରନ୍ତି । କେତେକ ଜିଆ (Annelida) ଓ ନୀଳ ଆଲ୍‌ଜି (Blue Algae) ମଧ୍ୟ ଏହି ଉପାୟରେ ବଂଶବୃଦ୍ଧି କରନ୍ତି । ବିବର୍ତ୍ତନର ପାହାଚରେ ଉଚ୍ଚତର ଗଠନ କେବଳ ମୃତ୍ୟୁର ଆବିଷ୍କାର ଓ ପ୍ରାକୃତିକ ପ୍ରଜନନ (Sexual Reproduction) ଦ୍ୱାରାହିଁ ସମ୍ଭବିଲା । କାରଣ ବ୍ୟକ୍ତି ବା (Individual)ର ଜନ୍ମ ଏହିଠାରୁ ।

ଏହି ମୃତ୍ୟୁ ବା ନଶ୍ୱରତାର ସଚେତନତା ଯେତେବେଳେ ଆମ ଅବଚେତନ ମାନସରେ ଆଙ୍କି ହୋଇଗଲା, ସେତେବେଳେ ଆମେ କ'ଣ କଲୁ ? ସ୍ପେସ୍ (Space) ଓ କାଳକୁ ଆୟତ୍ତ କରିବାକୁ ବାହାରିଲୁ ସେଇଠୁ 'ବେଗହିଁ ଉନ୍ନତିର ଲକ୍ଷଣ' ଧ୍ୱନି ବାହାରିଲା । ଯାହା ପରୋକ୍ଷରେ ଆଧୁନିକ ଯୁଗର ଧ୍ୱନି ବା ସ୍ଲୋଗାନ ରୂପରେ ରୂପାୟିତ ହେଲା । ଏଇ ଧ୍ୱନି ଆଉ ଅଭିଯାନ ଫଳରେ ଅସୀମର ସନ୍ଧାନରେ ବାହାରି ଆମେ ଦେଖିଲୁ ଯେ, "ଅସୀମ" ଆମର ଅସୀମର କଳ୍ପନାଠାରୁ ବି ଅସୀମ । ଆମର ଗ୍ରୁପ୍‌ର ପଥର ବ୍ୟାସ ଏକଲକ୍ଷ ଆଲୋକବର୍ଷ । ଆମର ନିକଟତମ 'ନେଭିଲା''ର ଦୂରତ୍ୱ ଆଠଲକ୍ଷ ଆଲୋକ ବର୍ଷ । ଆମର ନିକଟତମ ବାହ୍ୟବିଶ୍ୱ

(Island Universe) ର ଦୂରତା ଦୁଇ ନିୟୁତ ଆଲୋକ ବର୍ଷ। ଆମର ଦୂରତମ ବାହ୍ୟବିଶ୍ୱର ଦୂରତା ୫୦ କୋଟି ଆଲୋକ ବର୍ଷ। ଏଇ ବିଶ୍ୱ ବ୍ରହ୍ମାଣ୍ଡରେ ପ୍ରାୟ ଦଶକୋଟି ବିଶ୍ୱ ଅଛି। ଏହି ବିଶ୍ୱଗୁଡ଼ିକ ପରସ୍ପରଠାରୁ ପ୍ରାୟ ଏକ ନିୟୁତ ଆଲୋକ ବର୍ଷ ବ୍ୟବଧାନରେ ଅବସ୍ଥିତ। ଏଇ ବିଶ୍ୱଗୁଡ଼ିକର ଓଜନ ସୂର୍ଯ୍ୟଠାରୁ ୨୦ ହଜାର କୋଟି ଗୁଣ ଏବଂ ପ୍ରତ୍ୟେକ ବିଶ୍ୱରେ ପ୍ରାୟ ଦଶହଜାର କୋଟି ତାରକା ଅଛନ୍ତି। ପୁଣି ଏଇ ବ୍ରହ୍ମାଣ୍ଡ ନିରନ୍ତର ପ୍ରସାରିତ ହେଉଛି। ୧୩୦ କୋଟି ବର୍ଷରେ ଏହାର ଆକାର ପ୍ରାୟ ଦୁଇଗୁଣ ହୋଇଯିବ। ସମଗ୍ର ବ୍ରହ୍ମାଣ୍ଡରେ ଥିବା ଅଣୁମାନଙ୍କର ସଂଖ୍ୟା ୧୦ ପରେ ୭୯ଟି ଶୂନ ଦେଲେ ଯାହା ତାହା। (୧୦୭୯)

ଆମର ବ୍ରହ୍ମାଣ୍ଡ ଶେଷ ମଧ୍ୟେ ଅଶେଷ। ଆଉ ମଧ୍ୟେ ମଧ୍ୟ ଅସୀମ। ଏହା ହିଁ ଆମର ବିରାଟ ଦର୍ଶନ।

ପୁଣି ଏଇ ବ୍ରହ୍ମାଣ୍ଡ ନିରୀକ୍ଷଣରେ ଆଉ ଗୋଟିଏ ତାତ୍ପର୍ଯ୍ୟ ଅଛି। ଦୂର ସହରର ତାରକାମଣ୍ଡଳକୁ ନିରୀକ୍ଷଣ କଲାବେଳେ ଆମେ ଅତୀତକୁ ହିଁ ଦେଖିଥାଉ। ଆମେ ଯେତେବେଳେ ସୂର୍ଯ୍ୟକୁ ଦେଖୁ, ତାହା ଆଠମିନିଟ ତଳର ସୂର୍ଯ୍ୟ। କାରଣ ସୂର୍ଯ୍ୟର ଆଲୋକ ଆମ ପାଖରେ ପହଞ୍ଚିବାକୁ ଆଠମିନିଟ ଲାଗେ। ୧୯୩୨ ମସିହାରେ ଚିକାଗୋର ଏକ ଗବେଷଣାଗାରରେ ଦୂରସ୍ୱର୍ଗରେ କୌଣସି ଏକ ତାରକାରୁ ନିର୍ଗତ ଆଲୋକରଶ୍ମିର ସ୍ପର୍ଶରେ ଏକ ବୈଦ୍ୟୁତିକ ସର୍କିଟ ବନ୍ଦ ହୋଇଯିବାରୁ ଏକ ଭୟାନକ ଦୁର୍ଘଟଣା (Explosion) ଘଟିଥିଲା। ତାହା ୧୯୩୨ ମସିହାର ବହୁପୂର୍ବର ଏକ ତାରକାର ଆଲୋକ। ହୁଏତ ସେହି ଦୁର୍ଘଟଣା ସମୟରେ ଉକ୍ତ ତାରକାଟି ଥିଲା କି ନାହିଁ କହି ହୁଅନ୍ତା ନାହିଁ।

ସୂକ୍ଷ୍ମ ଓ ପରୀକ୍ଷା ଛଡ଼ା ଅଣୁଙ୍କର ପ୍ରତ୍ୟକ୍ଷତା କେବଳ ବୈଜ୍ଞାନିକଙ୍କର ପକ୍ଷରେ ହିଁ ସମ୍ଭବ ।

ପୃଥିବୀର ପଞ୍ଚସୀମା ଛାଡ଼ି ଅଣୁ ପରମାଣୁର ରାଇଜକୁ ଆସିଲେ ଆମର ଆଉ ବଡ଼ ଦର୍ଶନ ହୁଏ । ପ୍ରକୃତିରେ ଆମେ ୯୨ଟି ମୌଳିକ ପଦାର୍ଥ ଦେଖୁ । ଉଦ୍‌ଜାନଠାରୁ ଆରମ୍ଭ କରି ଇଉରାନିୟମ ପର୍ଯ୍ୟନ୍ତ । ଏଗୁଡ଼ିକର ଗଠନରେ ଦେଖୁ ଯେ କେନ୍ଦ୍ରସ୍ଥ କଣିକାଣୁ ଓ ପ୍ରାଣୁ ଚତୁର୍ଦ୍ଦିଗରେ କେତେକ ବିଦ୍ୟୁତାଣୁ ନିର୍ଦ୍ଦିଷ୍ଟ କକ୍ଷରେ ପ୍ରଦକ୍ଷିଣ କରୁଛନ୍ତି । ଏଇ ପ୍ରଦକ୍ଷିଣକାରୀ ବିଦ୍ୟୁତାଣୁର ସଂଖ୍ୟା ୬ ହେଲେ ଆମେ ପାଉ ଅଙ୍ଗାର ପରମାଣୁ । ୧୨ ହେଲେ ମାଗ୍ନେସିଅମ୍ ଧାତୁର ପରମାଣୁ । ୨୬ ହେଲେ ଲୌହର ପରମାଣୁ । ୨୯. ହେଲେ ତାମ୍ରର ପରମାଣୁ । ଆଉ ୯୨ ହେଲେ ଇଉରାନିୟମର ପରମାଣୁ । ପ୍ରଥମରୁ ଅର୍ଥାତ୍ ଅଙ୍ଗାର ପରମାଣୁରୁ ଦେଖିବାକୁ ମିଳେ "ଜୈବ" ପ୍ରକୃତିର ମୂଳଦୁଆ । କାରଣ ଏହି ଅଙ୍ଗାର ପରମାଣୁ ବିଭିନ୍ନ ମୌଳିକ ପଦାର୍ଥ ସହ ଶୃଙ୍ଖଳ ପ୍ରକ୍ରିୟା ସାହାଯ୍ୟରେ ମିଶି ଜୈବୀ ଅଣୁ ସୃଷ୍ଟି କରେ । ଶେଷଟିରେ ଆମେ ଦେଖୁ ଅଣୁର ପତନ ଉଦ୍ଭିଦ (Plant and algae) ମାନଙ୍କ ମଧ୍ୟରେ ଯେଉଁ କ୍ଲୋରୋଫିଲ ଦେଖୁ ତହିଁରେ ଥାଏ ମାଗ୍‌ନେସିଅମ । ନିମ୍ନଶ୍ରେଣୀରେ ପ୍ରାଣୀମାନଙ୍କ (Arthropo-'s and molluses) ମଧ୍ୟରେ ଯେଉଁ ହେମୋସିଆନିନ୍ (Hemocyanin) ପିଗମେଣ୍ଟ ଦେଖୁ ତହିଁରେ ତାମ୍ର ଥାଏ । ପୁଣି ଉଚ୍ଚତର ପ୍ରାଣୀମାନଙ୍କ ମଧ୍ୟରେ ଯେଉଁ ହେମୋଗ୍ଲୋବିନ ଦେଖୁ ତହିଁରେ ଲୌହ ଥାଏ । ଏଇ ମାଗ୍‌ନେସିଅମ, ତାମ୍ର, ଆଉ ଲୌହ ଅତି ରହସ୍ୟଜନକ ଭାବରେ ଯଥାକ୍ରମେ ଉଦ୍ଭିଦ, ନିମ୍ନଶ୍ରେଣୀସ୍ଥ ପ୍ରାଣୀ ଆଉ ଉଚ୍ଚ ଶ୍ରେଣୀର ପ୍ରାଣୀମାନଙ୍କ ସହ ଜଡ଼ିତ ।

ଜୀବ ଜଡ଼ର ଏ ଏକ ଅଦ୍ଭୁତ ଆତ୍ମୀୟତା ।

କିନ୍ତୁ ବିଦ୍ୟୁତ୍‌କଣର ଗଠନ କଥା ବିଶ୍ଳେଷଣାକୁ ଆସିଲେ ଆମେ ଗୋଟିଏ ଦ୍ୱୈତତା'ର ସମ୍ମୁଖୀନ ହେଉ । ବ୍ରୋଗ୍‌ଲି, ଶ୍ରୋଡ଼ିଞ୍ଜର, ଡାଭିସନ ଓ ଜରମର ପ୍ରଭୃତି ବୈଜ୍ଞାନିକମାନଙ୍କର ପରୀକ୍ଷାରେ ଆମେ ଜାଣିଲୁ ଯେ ବିଦ୍ୟୁତ୍‌କଣ 'ତରଙ୍ଗ' (Wave) । ପୁଣି ପ୍ଲାଙ୍କ ଓ ଆଇନଷ୍ଟାଇନଙ୍କ ପରୀକ୍ଷାରୁ ଜାଣିଲୁ ଯେ ଏହା 'କଣିକା' (Particle) ସୁତରାଂ ଏହା ଏକାଧାରରେ ତରଙ୍ଗ ଓ କଣିକା । ହାଇଜେନବର୍ଗଙ୍କ ନିୟମରୁ ଜାଣିଲୁ ଯେ, ବିଦ୍ୟୁତ୍‌କଣ ମଧ୍ୟରେ ଏକ ଅନିଶ୍ଚିତତା ଅଛି । ଆମେ ଏକାଥରେ ଏହାର ଗତି ଓ ଅବସ୍ଥିତି ଉଭୟ ଜାଣି ପାରିବୁ ନାହିଁ । ଗତି ଠିକ୍ ଭାବେ ଜାଣିପାରିଲେ ଅବସ୍ଥିତି ଜାଣି ପାରିବୁ ନାହିଁ । ଅବସ୍ଥିତି ଠିକ୍ ଭାବେ ଜାଣି ପାରିଲେ ଗତି ଜାଣି ପାରିବୁ ନାହିଁ । ଏହି ଅନିଶ୍ଚିତତା ଓ ଅବ୍ୟବସ୍ଥିତତା ହେଉଛି ବସ୍ତୁ ପ୍ରକୃତିର ନିମ୍ନତମ ଓ ନ୍ୟୂନତମ ସୀମା ଶୃଙ୍ଖଳା ଘଟଣାର ଏକ ମନୋନୟନ ମାତ୍ର ।

ଏହା ରୂପ ମଧ୍ୟରେ ଅରୂପର ସନ୍ଧାନ । ଧାରା ମଧ୍ୟରେ ଧାରା-ଭଙ୍ଗର ବି ।

ଏହା ସାଙ୍ଗକୁ ଆଇନଷ୍ଟାଇନଙ୍କ ଆପେକ୍ଷିକବାଦର ତାତ୍ପର୍ଯ୍ୟ ଯୋଡ଼ି ଦେଲେ ବସ୍ତୁ ପ୍ରକୃତି ଆହୁରି ରହସ୍ୟମୟ ହୋଇ ଉଠେ । ଏଠି ଆମେ କଅଣ ଦେଖିଲୁ ? ? ବସ୍ତୁ ଓ ଶକ୍ତିର ଏକତ୍ର । ପ୍ରହେଳିକାମୟ କାଳ ଓ ପୃଥ୍ୱୀ । ଏମାନଙ୍କର ସ୍ୱତନ୍ତ୍ର ସତ୍ତା ନାହିଁ । କାଳ ଓ ପୃଥ୍ୱୀ ବିଷୟରେ ଆମର ଯେଉଁ ସାଧାରଣ ଧାରଣା ତାହା ଏକ ମାନସିକ ଅବଲୋକନ ମାତ୍ର । ବର୍ତ୍ତମାନର ସ୍ଥିର ସଂଜ୍ଞା ନାହିଁ । ମାଧ୍ୟାକର୍ଷଣ ବୋଲି କିଛି ନାହିଁ । ବସ୍ତୁର ସାନ୍ନିଧ୍ୟହିଁ ପୃଥ୍ୱୀର ବକ୍ରତା । ଏଠି ଦୁଇ ସୂକ୍ଷ୍ମ ଦୁଇ ରେଖା ହୁଏ ନାହିଁ । ଏଠି

କଳସୀ ଭିତରେ ଦାନବ ଲୁକ୍‌କାୟିତ ରହିଥିଲା ପରି ବସ୍ତୁ ଭିତରେ ଶକ୍ତି ଆତ୍ମଗୋପନ କରିଛି । ଏହା ସାଙ୍ଗକୁ ଆହୁରି ଅନେକ ନୂତନ ଓ ଚମତ୍କାର ଧାରଣା ।

ଏହା ପରଠୁ କାର୍ଯ୍ୟ କାରଣର ଦୁଆ ପୂର୍ଣ୍ଣରୂପେ ଭାଙ୍ଗିଗଲା । 'କାର୍ଯ୍ୟ କାରଣ'ର ଧାରଣା, ଗୋଟିଏ ସରଳ ସଜ୍ଞା ଉପରେ ପର୍ଯ୍ୟବସିତ । 'କାରଣ' ବା (cause) ପ୍ରଥମେ ବା 'ପୂର୍ବରୁ' ଆସେ । 'କାର୍ଯ୍ୟ' ବା effect ପରେ ଆସେ । କିନ୍ତୁ ଆଇନ-ଷ୍ଟାଇନଙ୍କ ଆପେକ୍ଷିକ ତତ୍ତ୍ୱ ଅନୁସାରେ 'ପୂର୍ବରୁ' ଓ 'ପରେ' ଏହା ମଧ୍ୟସ୍ଥ ପାର୍ଥକ୍ୟ ଜାଣି ହେବ ନାହିଁ । ଦୁଇଟି ପୃଥକ ସ୍ଥାନରେ ସମୟ ତୁଳନା କରିବାକୁ ଗଲେ ଏକା ସ୍ଥାନରୁ ଅନ୍ୟ ଏକ ସ୍ଥାନକୁ ଅନ୍ୟ ଏକ ସଙ୍କେତ (Signal) ପଠାଇବା ଆବଶ୍ୟକ । କିନ୍ତୁ ଏହି ସଙ୍କେତ ଯିବା ପାଇଁ ଯେତେ କମ ହେଉ ପଛେ କିଛି ସମୟ ଲୋଡ଼ା । ସୁତରାଂ ଜଣକ ପାଇଁ ଯାହା "ପୂର୍ବରୁ" ଅନ୍ୟ ଜଣକ ପାଇଁ ତାହା 'ପରେ' ମଧ୍ୟ ହୋଇପାରେ । କାର୍ଯ୍ୟ-କାରଣ ଭାଙ୍ଗି ଗଲା ପରେ ଆମେ ଜାଣିଲୁ ଯେମିତି ମଧ୍ୟ ଯୁଗରେ ପ୍ରଥମ କାରଣ (First cause) ଏକ ପ୍ରଜ୍ଞାବାଦ ଥିଲା, ସେଇପରି ଊନବିଂଶ ଶତାବ୍ଦୀର ଲାପଲେସ୍‌ଙ୍କ ଉପପାଦ୍ୟ ଯେ ସବୁ ଜିନିଷକୁ କାର୍ଯ୍ୟ-କାରଣଦ୍ୱାରା ବୁଝାଇ ଦେଇ ହେବ—ତାହା ମଧ୍ୟ ଏକ ପ୍ରକାର ଉନ୍ନତ ପ୍ରଜ୍ଞାବାଦ ଥିଲା ।

ସୁତରାଂ ବିଂଶ ଶତାବ୍ଦୀ ବେଳକୁ ଆମେ ବହୁତ ନୂତନ ଓ କ୍ରାନ୍ତିକାରୀ ଧାରଣା ସହ ପରିଚିତ ହୋଇଗଲୁ । ମୁଖ୍ୟତଃ ସେ ଗୁଡ଼ିକ—ମୃତ୍ୟୁର ପ୍ରାୟୋଗିକ ଆବଶ୍ୟକତା ; କେତେକ ମୌଳିକ ବସ୍ତୁର ଧର୍ମର ବୈଶିଷ୍ଟ୍ୟ ଓ ଜୀବ ସହିତ ସେ ଗୁଡ଼ିକର

ଏକ ରହସ୍ୟମୟ ସମ୍ପର୍କ ; କାର୍ଯ୍ୟ କାରଣର ଅପ୍ରାସଙ୍ଗିକତା; ଧାରାଭଙ୍ଗ ; ଅନିଶ୍ଚିତତା ବା ଦୈବ (chance)ର ଧାରଣା ; କାଳ ଓ ପୃଥ୍ୱୀର ଏକ ଅପୂର୍ବ ସମନ୍ୱୟ ; ବସ୍ତୁ ଓ ଶକ୍ତିର ଏକତ୍ୱ ଓ ପର୍ଯ୍ୟବେକ୍ଷଣର ,ବସ୍ତୁ ସାପେକ୍ଷିକତା (Subjectivity) ବା ଘଟଣା ଓ ପର୍ଯ୍ୟବେକ୍ଷକର ଅବିଚ୍ଛିନ୍ନତା ।

ତା' ହେଲେ ଏକଥା ପରିଷ୍କାର ହୋଇଗଲା ଯେ ଏ ଯୁଗରେ କପର" ଧାରଣାର ସ୍ୱୟଂସମ୍ପୂର୍ଣ୍ଣତା ଆଉ ରହିଲା ନାହିଁ । ଆମେ ସ୍ରଷ୍ଟାର ଯେଉଁ ପାଣ୍ଡୁଲିପିଟି ଧରିଥିଲୁ ସେ ପାଣ୍ଡୁଲିପିରେ ପୁଣି ଆବିଷ୍କାର କଲୁ ଯେ ତାର ଭାଷା କାର୍ଯ୍ୟ କାରଣ ବା ଅବଶ୍ୟମ୍ଭାବୀ ପରିଣତି (Inevitable effect) ନୁହେଁ, ଏକ ସମ୍ଭାବନା ପୂର୍ଣ୍ଣ ପ୍ରବଣତା Probable trend) ମାତ୍ର । ପାଣ୍ଡୁଲିପିଟି ଗୋଟିଏ ଅଦୃଶ୍ୟ କାଳିରେ ଲେଖା ହୋଇଛି ଏବଂ ସ୍ରଷ୍ଟା ଯେମିତି ପୃଥ୍ୱୀକାଳ (Space-time continuum) ମଧ୍ୟରେ ନିଜେ ବି ଅଦୃଶ୍ୟ ଅଥଚ ସର୍ବବ୍ୟାପୀ ଆଚ୍ଛାଦିତ ହୋଇଯାଇଛି ।

ଏହି ସମସ୍ତର ମିଶ୍ରଣହିଁ ଆଧୁନିକ ଯୁଗ । ଏହି ଆଧୁନିକ ଯୁଗର ଗୋଟିଏ ବିଶେଷ ବୁନିଆଦି ଅଛି । ତାହା ହେଉଛି ଏହି ଯେ, ଏହା ଅନ୍ୟ ସବୁ କାଳ ଓ ଯୁଗଠାରୁ ସବୁ ବିଷୟରେ ଗରୀୟାନ । ବଂକ୍ତି ସାର୍ବଭୌମିକତା ଯାହା ଯୁଗ ଯୁଗ ଧରି ଦାର୍ଶନିକ-ମାନଙ୍କ ଆଲୋଚନାର ବସ୍ତୁ ହୋଇ ଆସିଛି, ତାହା ଆଜି ଜଣର ଅବଚେତନ ମାନସର ଏକ ଅଂଶ । ଆମେ ଆମର ଏଇ ନୂତନ ଜୀବନ ବିଷୟରେ ସଚେତନ । ଆମର ମହିମା ବିଷୟରେ ସର୍ବଦା ଜାଗ୍ରତ । ଅତୀତର ଅଭିଜ୍ଞତା ବା ଭବିଷ୍ୟତର ଆଶା ଆମକୁ ସାହାଯ୍ୟ କରିପାରିବ ନାହିଁ । ଅତୀତ ବା ଭବିଷ୍ୟତ

ଆମ ପକ୍ଷରେ କେବଳ ଏକ ଐତିହାସିକ ଓ ତାତ୍ତ୍ୱିକ ଆକର୍ଷଣ (Historical and academic interest) ଛଡ଼ା ଆଉ କିଛି ନୁହେଁ ।

ଆମେ ବହୁତ ଜାଣିଚୁ । ଆମେ ଜାଣିଚୁ ଯେ, ଆମ ପକ୍ଷରେ ସବୁ କିଛି ସମ୍ଭବ । ଗ୍ରହଗ୍ରହାନ୍ତର ଯାତ୍ରା ସମ୍ଭବ । ପୁଣି ଧ୍ୱଂସର ତାଣ୍ଡବଲୀଳା ବି ସମ୍ଭବ ।

ସୁତରାଂ ଆମେ ଅସ୍ଥିର । ଯୁଗର ସମସାମୟିକ ଚିନ୍ତା ନେଇ ପ୍ରତ୍ୟେକ ବିପ୍ଳବ ବା ଆନ୍ଦୋଳନର "ସୁବର୍ଣ୍ଣଯୁଗ" ଅଛି । କେତେକ ଯୁଗ ବା ସମାଜ ଅତୀତରେ 'ସୁବର୍ଣ୍ଣଯୁଗ'ର କଳ୍ପନା କରନ୍ତି । ଯେମିତି ଭାରତ ଇତିହାସରେ ମୌର୍ଯ୍ୟଯୁଗ । ତାହା ପ୍ରତିକ୍ରିୟାଶୀଳ ଆନ୍ଦୋଳନ । କେତେକ ଯୁଗ ଭବିଷ୍ୟତରେ 'ସୁବର୍ଣ୍ଣଯୁଗ'ର ସ୍ଥାପନା କରନ୍ତି । ତାହା ପ୍ରଗତିଶୀଳ ଆନ୍ଦୋଳନ । ଯେମିତି ମାର୍କସ୍‌ଙ୍କ 'କମ୍ୟୁନିଜମ୍' ବା ଗାନ୍ଧିଜୀଙ୍କ 'ରାମରାଜ୍ୟ' । କିନ୍ତୁ ଆଧୁନିକ ଯୁଗର ବିଜ୍ଞାନର "ସୁବର୍ଣ୍ଣଯୁଗ" ଅତୀତ ଅବା ଭବିଷ୍ୟତରେ ନାହିଁ । ଆମର ସୁବର୍ଣ୍ଣଯୁଗ' 'ବର୍ତ୍ତମାନ'ରେହିଁ ଅବସ୍ଥିତ । ଏହାହିଁ ଏ ଯୁଗର ବୈଶିଷ୍ଟ୍ୟ । ଆମେ ନିଶ୍ଚିତ ଭାବେ ଜାଣୁ ଯେ ଆମର ଜୀବନକାଳ ଭିତରେ ଆମେ ସୁବର୍ଣ୍ଣ ଯୁଗରେ ପହଞ୍ଚିଯିବୁ । ତାକୁ ଅବଶ୍ୟ ଅଙ୍ଗରେ ନିଭେଇବୁ ।

ସୁତରାଂ ଆମେ ଅସ୍ଥିର । ଆମେ ଚଞ୍ଚଳ ଆଉ ବ୍ୟଗ୍ର । ଆମେ ଅଧୈର୍ଯ୍ୟ ଆଉ ଅସହିଷ୍ଣୁ । କାରଣ ଆମେ ଏଇ ସୁବର୍ଣ୍ଣଯୁଗକୁ ଚଞ୍ଚଳ ଅଙ୍ଗରେ ନିଭେଇବା ପାଇଁ ବ୍ୟଗ୍ର । ପୁଣି ଯେହେତୁ ଆମେ ଜାଣିଚୁ ଆମ ପକ୍ଷରେ ସବୁ କିଛି ସମ୍ଭବ, ଆମ ମନରେ ଲୁଚି ରହିଛି ଏକ ପ୍ରଚ୍ଛନ୍ନ ଅସ୍ପଷ୍ଟ ଆଶଙ୍କା । ହୁଏତ କୌଣସି ଅଘଟଣ ଘଟିପାରେ

ଆଣବିକ ପ୍ରଳୟ, ଗ୍ରହାନ୍ତର ସହ ସଂଘର୍ଷ, ଉତ୍ତାପର ଆକସ୍ମିକ ବୈଷମ୍ୟ, ଅପର କୌଣସି ଗ୍ରହର ଅଧିବାସୀଙ୍କ ଦ୍ୱାରା ପୃଥିବୀକୁ ଉପନିବେଶରେ ପରିଣତ କରିବା, ଆକସ୍ମିକ ପରିବର୍ତ୍ତନ (accidental variation) ଫଳରେ ଏକ ଧ୍ୱଂସ, ଓ ପୃଥକ୍ ଜାତିର ବିବର୍ତ୍ତନ, ଟେଲିପାଥି ବା କାକଚରିତ ଜ୍ଞାନ ହାସଲ ଫଳରେ ମାନବ ଜାତି ମଧ୍ୟରେ ପାରସ୍ପରିକ ସଂଘର୍ଷ, ଯାହାକିଛି— ଯାହାଫଳରେ ସୁବର୍ଣ୍ଣଯୁଗ ଆମେ ଅଙ୍କରେ ନିଭେଇ ପାରିବୁ ନାହିଁ । ମିସେସ ଶେଲିର ଫ୍ରାନ୍‌କିନ୍‌ଷ୍ଟାଇନ୍‌କୁ ଡରୁ ନାହୁଁ । ଆମେ ଡରୁଛୁ ଆମ ନିଜର ଗ୍ରଛକୁ । ଫଳରେ ଏକ ଅତି କଠୋର ଆତ୍ମବିଶ୍ୱାସ ଓ ଆତ୍ମସନ୍ତୋଷ ଆଉ ଏକ ନିଦାରୁଣ ନିଷ୍ଠୁର ଆତ୍ମଗ୍ଲାନି—ଏଇ ଉଭୟହିଁ ଆମ ଭାବନାର ଯୁଗ୍ମ ଅଙ୍ଗ ।

ଏହି ଦ୍ୱୈତତା ମଧ୍ୟରେ ଆଧୁନିକ ଯୁଗର ସମସ୍ତ ସତ୍ୟ ଲୁକ୍‌କାୟିତ ରହିଛି । ଏହାଫଳରେ ହିଁ ଆଧୁନିକ ସମାଜର ନୂତନ ଅଦୃଷ୍ଟପୂର୍ବ ଶୂନ୍ୟତା ଓ ଅର୍ଥହୀନତା ବୋଧ । ତାହାକୁ ମନସ୍ତତ୍ତ୍ୱିକ "ଜଙ୍ଗ୍" ତାଙ୍କର "ମଡର୍ଣ୍ଣମ୍ୟାନ ଇନ୍ ସର୍ଚ୍ଚ ଅଫ୍ ଏ ସୋଲ୍," (Modern man in search of a soul)ରେ ବଖାଣିଛନ୍ତି । ଏହା ଆତ୍ମର ଏକ ଅଚଳ ଅବସ୍ଥା ବୋଲି ସେ ଉଲ୍ଲେଖ କରିଛନ୍ତି । ଏହା ଫଳରେହିଁ ଆମ ଭିତରର ମୂଲ୍ୟବୋଧ ଆଉ ଆଦର୍ଶ ହଜିଯାଇଛି । ଯାହାକୁ ଆଲଡ଼ସ୍ ହକ୍‌ସଲି ତାଙ୍କର "ଏଣ୍ଡସ୍ ଆଣ୍ଡ ମିନ୍‌ସ" (Ends and Means) ପୁସ୍ତକର ଅର୍ଥହୀନତାର ଦର୍ଶନ (Philosophy of meaniglessness) ବୋଲି ବର୍ଣ୍ଣନା କରିଛନ୍ତି । ଏହା ଫଳରେ ହିଁ ଆଧୁନିକ ଜୀବନର ଏତେ ହଇଚଇ ଆଉ ଆନ୍ଦୋଳନ । ଯାହାକୁ "ଓରଟେଗା ଗାସେଟ୍" ତାଙ୍କର

"ରିଭୋଲ୍‌ଟ ଅଫ ଦ ମାସେସ" (Revolt of the masses) ପୁସ୍ତକରେ "ମନସ୍ତତ୍ତ୍ୱର ନଷ୍ଟଶିଶୁ" (spoilt chil ) ନାମରେ ଦେଇ ସୁନ୍ଦର ଭାବରେ ବୁଝାଇ ଦେଇଛନ୍ତି । ଆଧୁନିକ ଯୁଗରେ ପୌଢ଼ତ୍ୱ ନାହିଁ । ଏଠି ଚିରନ୍ତନ ତାରୁଣ୍ୟ । ଏଠି ସମସ୍ତେ ଯୁବକ । କାରଣ ଏଠି ଜୀବନର ପରିକଳ୍ପନାରେ ସଫଳତା ନାହିଁ । ତେଣୁ ଆମର ଦାୟିତ୍ୱ ବୋଲି କିଛି ନାହିଁ । କିନ୍ତୁ ଅଧିକାର ଅଛି । ଆମେ ଯୁବକ । ତେଣୁ ଆମର ସକଳ କର୍ମରେ ବ୍ୟଙ୍ଗ ଆଉ ଧ୍ୱଂସର ବିସ୍ତାର । ଆଧୁନିକ ସମାଜରେ ଅତୀତ ବା ଭବିଷ୍ୟତ ପାଇଁ କୌଣସି କୃତଜ୍ଞତା ନାହିଁ । ଯେମିତି ଆମେରିକାର Beatnik ଗୋଷ୍ଠୀ । ଲଣ୍ଡନର Teddy boys । ଜାପାନର Sun tribers ଓ ରୁଷିଆର Styliagi (nipsters) ।

ତେଣୁ We are the hollow men···

ଆଧୁନିକ ସମାଜକୁ ଏଇ ଅବସ୍ଥା ଅତିକ୍ରମ କରିବାକୁ ହେବ । ଗୀତାର ପରିଭାଷାରେ ଆମକୁ ନିରୁପଦ୍ରବୀ ଓ ଛିନ୍ନସଂଶୟ ହେବାକୁ ପଡ଼ିବ । ଗୀତାର ସପ୍ତଦଶ ଅଧ୍ୟାୟରେ ଶରୀର ସମାଜ-ସୃଷ୍ଟି ଏହି ତ୍ରିବେଣୀ ସଂସ୍ଥାର ସଂରକ୍ଷଣ ନିମନ୍ତେ ଯେଉଁ ତପ-ଦାନ-ଯଜ୍ଞ ନାମକ ତ୍ରିବିଧ କର୍ମର ବ୍ୟବସ୍ଥା ଅଛି, ତା'ର ନୂତନ ସଂଜ୍ଞା ନିରୂପଣ କରିବାକୁ ପଡ଼ିବ । ମୋର କହିବାର କଥା ଏଇଆ ଯେ ଏହାର ଉତ୍ତର ଆସିବ ବୈଜ୍ଞାନିକଙ୍କଠାରୁ । ଆଧୁନିକ ଯୁଗର "ବିଜ୍ଞାନ ଓ ବୈଜ୍ଞାନିକ"ର ଗୁରୁତ୍ୱ ଏହିଠାରେ ।

ଆପଣ ଯଦି ଆଶା କରନ୍ତି ଯେ ଦର୍ଶନ ବା ତତ୍ତ୍ୱ ସ୍ତରରୁ ଏହାର ସମାଧାନ ଆସିଯିବ, ତେବେ ମୁଁ ଅତି ବିନୟର ସହିତ କହିବି ଆପଣ ଭୁଲ ଧାରଣା ପୋଷଣ କରୁଛନ୍ତି । କାରଣ

ବୈଜ୍ଞାନିକଙ୍କୁ ଦର୍ଶନର ବହୁତ ଗୁରୁ ସମସ୍ୟାର ସମାଧାନ କରିବ ଏ ଯୁଗରେ । ତାଙ୍କ ମଧ୍ୟରୁ ଜଣଙ୍କର ନାମ ଆଲ୍‌ବର୍ଟ ଆଇନଷ୍ଟାଇନ ।

ସୁତରାଂ ବିଜ୍ଞାନ ମଧ୍ୟରେ ଆଜି ଯେଉଁ ଅନ୍ତଃସ୍ଥ ଦ୍ୱନ୍ଦ୍ୱ ପ୍ରକାଶ ପାଇଛି, ତା'ର ସମାଧାନହିଁ ଏ ଯୁଗର ସମାଧାନ । ଏହା ବୈଜ୍ଞାନିକର କାମ, ଆମ୍ଭମାନଙ୍କର କାମ । ଏଥିପାଇଁ ଆମକୁ—ବୈଜ୍ଞାନିକକୁ ସ୍ଥିତ ପ୍ରଜ୍ଞ ହେବାକୁ ପଡ଼ିବ । ଗୀତାରେ ଆତ୍ମନିଷ୍ଠ, ଜ୍ଞାନନିଷ୍ଠ, ନିର୍ଲିପ୍ତ ଆଉ ଗୁଣାତୀତରୂପୀ ସ୍ଥିତପ୍ରଜ୍ଞଙ୍କୁ ଆଦର୍ଶମୂର୍ତ୍ତି ରୂପରେ ବୈଜ୍ଞାନିକକୁ ଠିଆ ହେବାକୁ ପଡ଼ିବ ଏବଂ ଏ ଆଦର୍ଶମୂର୍ତ୍ତିର ଛବି ବୈଜ୍ଞାନିକର ମନନଗୁଡ଼ିକ ଭିତରୁହିଁ ଆସିବ ।

କାର୍ଯ୍ୟକାରଣ ଧାରଣାରୁ ଭବିଷ୍ୟତ ବିଷୟରେ ଆମ ମନରେ ଆଗରୁ ଏକ ବିକୃତ ଧାରଣା ଥିଲା—ଯେ ଭବିଷ୍ୟତ ବର୍ତ୍ତମାନଠାରୁ କୌଣସି ଗୁଣରେ ପୃଥକ ନୁହେଁ । ଏହା କେବଳ ଅନ୍ୟ ସମୟରେ ଘଟେ । ନିଉଟନ ଆମକୁ ସମୟର ଯେଉଁ ଛବି ଦେଇ ଯାଇଥିଲେ, ସେଥିପୋଗୁଁ ଆମର ଏଇ ପ୍ରମାଦ । ଏ 'ସମୟ'ର ଦିଗ ନ ଥିଲା । କିନ୍ତୁ ଆଜି ଆମେ ଜାଣିଚୁ ଯେ ଶକ୍ତିର ଅଗଠନ ଓ ବୈଷମ୍ୟ ଧୀରେ ଧୀରେ ବଢ଼ୁଛି । ଏହି ଅଗଠନର ମାପହିଁ ସମୟ । ଭବିଷ୍ୟତ ବେଶି ବୈଷମ୍ୟର କାଳ । ବର୍ତ୍ତମାନ ବେଶି ଗଠନର କାଳ । ପୁଣି ଆମେ ଜାଣିଚୁ ଯେ ବ୍ରହ୍ମାଣ୍ଡ ଏକ ବର୍ଦ୍ଧମାନ ଅବସ୍ଥା । ଏହା ନିରନ୍ତର କ୍ରମବର୍ଦ୍ଧମାନ । କ୍ରମ ପ୍ରସାରଣଶୀଳ । ସୁତରାଂ ଭବିଷ୍ୟତ ବେଶି ପ୍ରସାରଣର କାଳ । ଚମତ୍କାର କଥା ଏଇଆ ଯେ, ଏହି ଅଗଠନ ଓ ବୈଷମ୍ୟ ଏକ ଅସ୍ଥିରତା ନିୟମ (uncertainty principle) ଫଳ । ସୁତରାଂ ଅସ୍ଥିରତା କା

( hance ଯୋଗୁ ହିଁ ଭବିଷ୍ୟତ ବର୍ତ୍ତମାନଠାରୁ ପୃଥକ । ଏହାକୁ ଅନ୍ୟ କଥାରେ କହିଲେ—ଭବିଷ୍ୟତ ଅନିଶ୍ଚିତ ।

ଏଇ ଅନିଶ୍ଚିତତାର ରୂପ ବି ଆମେ ଜାଣିଚୁ । ଆମର ନିୟମଗୁଡ଼ିକ ବିବରଣାତ୍ମକ (statistical) କ୍ଷୁଦ୍ର ପରିସର (microcosm) ସ୍ତରରେ ଏହା କାର୍ଯ୍ୟକାରଣମାନେ, କିନ୍ତୁ ଏହି ଅନିଶ୍ଚିତତାର ଏକ ସ୍ଥିରତା ଅଛି । ଆମକୁ ଦର୍ଶନ ବା ଇତିହାସର ମୁକ୍ତଇଚ୍ଛା । (freewill) ବା ଭାଗ୍ୟବାଦ (determinism) ସମ୍ବନ୍ଧିତ କୁସ୍ତିକସରତ କରିବାରେ ଦରକାର ନାହିଁ । କାରଣ ଆମେ ଜାଣିଚୁ ଯେ ଆମର ଅସ୍ଥିରତା ବା uncertaintyର ଏକ ନିର୍ଦ୍ଦିଷ୍ଟ ପରିସୀମା ଅଛି । ଏହା ସମ୍ଭାବନା ବା ପ୍ରବଣତାର ଏକ ମାପ ଯାହାକୁ ନିର୍ଦ୍ଦିଷ୍ଟ ଭାବରେ ଜାଣି ହେବ ।

ଏହାହିଁ ଆମର ଅସ୍ଥିରତା ମଧ୍ୟରେ ସ୍ଥିରତା ।

ଏହି ପରିକଳ୍ପନା ଆମର ଭାରତୀୟ ନିୟତିର ପରିକଳ୍ପନା, ଗ୍ରୀକ୍ ଟ୍ରାଜେଡ଼ିର ପରିକଳ୍ପନା । ଏହା ଭାଗ୍ୟବାଦୀ କଳପନା ନୁହେଁ । ଏହା ମଧ୍ୟରେ ମୁକ୍ତଇଚ୍ଛା ଓ ପରିଣତି ଉଭୟର ମନୋହର ସୌମ୍ୟ କଳ୍ପନା ରହିଛି । ଏହାର ଅଭାବରୁ ଆମେ ବହୁତ ଦେଖିଚୁ । ମନୋବିଜ୍ଞାନ କଥା ବିଚାର କରନ୍ତୁ । ଏହି ସାମ୍ୟ ଦୃଷ୍ଟିଭଙ୍ଗୀର ଅଭାବରୁ ମନୋବିଜ୍ଞାନ ମାନବର ଉଦ୍ଦେଶ୍ୟ ବା ସ୍ୱାର୍ଥକୁ କାରଣ (cause) ଓ ବ୍ୟବହାରକୁ କାର୍ଯ୍ୟ (effect) ରୂପେ ବିବେଚନା କରିଚ । ସାହିତ୍ୟ ଆଡ଼କୁ ନଜର ପକାନ୍ତୁ । ଏଇଆକୁ ନେଇ ଆମର ସାହିତ୍ୟ ଆଜସୁଦ୍ଧା ବ୍ୟସ୍ତ । ତେଣୁ ସାହିତ୍ୟର ସବୁ ପ୍ରଗତିଶୀଳତା ମଧ୍ୟରେ ଏକ ବିଶାଦର ପ୍ରଲେପ । ତେଣୁ ଆମର ନାୟକ (hero) ସବୁବେଳେ ବିଦ୍ରୋହୀ (rebel) । ଆମର ଆଇନ (Law) ଏଇ

ପ୍ରମାଦ କବଳରୁ ଆଜ ସୁଦ୍ଧା ମୁକ୍ତ ହୋଇ ପାରି ନାହିଁ । ସମାଜର ସବୁ ଛନ୍ଦ ଆଉ ସ୍ତରରେ, ସବୁ ଧାରା ଓ ପ୍ରବାହ ମଧ୍ୟରେ ଏହି କାର୍ଯ୍ୟ-କାରଣର ଜୀର୍ଣ୍ଣ ବିକଳାଙ୍ଗ ପ୍ରକାଶ ଆପଣ ଦେଖିବାକୁ ପାଇବେ ।

କିନ୍ତୁ ଏହା ଉଚିତ ଓ ସୁଷମ ବିଚାର ନୁହେଁ । କାର୍ଯ୍ୟ କାରଣ ଉପରେ ଆଉ ଏକ ସୌମ୍ୟ ଓ ସମନ୍ୱୟର ବିଚାର ଅଛି । ତାହା ଏହି ଅସ୍ଥିରତା ମଧ୍ୟରେ ସ୍ଥିରତା । ଏହି ଦୃଷ୍ଟି ଭଙ୍ଗୀରୁ ଦେଖିଲେ ସବୁ ନିରାଶାବାଦ ଆଉ ବ୍ୟସ୍ତତା ଉଭେଇଯିବ ଓ ନୂତନ ଆଶାବାଦର ଅରୁଣିମା ଆମ ଆଗରେ ଝଲସି ଉଠିବ ।

ସୁତରାଂ ଏହି ଆଦର୍ଶ ମୂର୍ତ୍ତିର ଛବି ଆମ ଆଗରେ ଅଙ୍କି ହୋଇଗଲେ ଆମର ଉତ୍ତର ଆମକୁ ମିଳିଯିବ । ଆମେ ସ୍ରଷ୍ଟାରେ ପାଣ୍ଡୁଲିପିଟି ଧରିଥିଲୁ । ତା'ର ଭାଷା, ଚରିତ୍ର ଓ ଛବି ଆମ ଆଗରେ ଆଗରେ ସ୍ଫଟିକ ସ୍ୱଚ୍ଛ ହୋଇଯିବ । ସୃଷ୍ଟିର ଉପାଖ୍ୟାନ ବି ଆମକୁ ମିଳିଯିବ । ଏହି ସ୍ଫଟିକ ସ୍ୱଚ୍ଛତା ମଧ୍ୟରେ ଆମେ ଦେଖିବୁ ଯେ ଏଠାରେ ଧର୍ମ ବିଜ୍ଞାନ ମଧ୍ୟରେ ତଥାକଥିତ ଦ୍ୱନ୍ଦ୍ୱ ନାହିଁ । ଧର୍ମ ଅଜଣା ରାଇଜର ବିଜ୍ଞାନ, ବିଜ୍ଞାନ ଜଣା ରାଇଜର ଧର୍ମ । ଏହା ଆମକୁ ବୈଜ୍ଞାନିକ ଧର୍ମ ଓ ଧାର୍ମିକ ବିଜ୍ଞାନର ଦିବ୍ୟଦୃଷ୍ଟି ଆଡ଼କୁ ନେଇଯିବ । ବୈଜ୍ଞାନିକ ଦର୍ଶନ ଓ ଦାର୍ଶନିକ ବିଜ୍ଞାନ ଆଡ଼କୁ ବାହିନେବ । ଥରେ ଏହା ହାସଲ ହୋଇଗଲେ ଆମେ ମଧ୍ୟଯୁଗର "ଆଦର୍ଶ ପ୍ରକୃତି" ଚରିତାର୍ଥ କରି ପାରିବୁ ।

( * ବିଜ୍ଞାନ ପ୍ରଚାର ସମିତି (ଓଡ଼ିଶା), କଳାହାଣ୍ଡି ଶାଖାର ପ୍ରଥମ ବାର୍ଷିକ ଅଧିବେଶନରେ ମୁଖ୍ୟ ଅତିଥିଙ୍କ ଅଭିଭାଷଣ ।)

# ବିଜ୍ଞାନର ରୂପକଥା

ଦିଦୀମା କାହାଣୀର ଅସରନ୍ତି କଥା ଲହରରେ ଆମର ଶୈଶବ ସ୍ପୃଷ୍ଟ ଓ ରସାଣିତ ହୋଇଛି । କାଳର ଉଜାଣି ପଥରେ ସେ ସବୁ ଆସ୍ତେ ଆସ୍ତେ ଅସ୍ପଷ୍ଟ ହୋଇ ଯାଉଥିଲେ ହେଁ ଆମ ଭାବନାର ପ୍ରତି ତନ୍ତ୍ରୀରେ ସେଗୁଡ଼ିକ ଓତପ୍ରୋତ ଭାବରେ ଜଡ଼ିତ । ସଞ୍ଜ ପହର ଶୀତୁଆ ପବନରେ ବାଉଁଶଆଡ଼େ ହେଁସ ଉପରେ ଗୁନ୍ଦର ମୁହୂଜ ତଳେ ନଡ଼ିଆ ଗଛର ଝମ୍‌ଝମ୍ ନାଚ ମଝିରେ ଆମେ ଶୁଣିଚୁ କୁହୁକମଣ୍ଡଳ ଚଢ଼େଇ କଥା । ସାତ ସାଧବ, ଶାଳୀଦେଣା ଓ ସୁନାନାକି ଝିଅ କଥା । ଅଗନାଅଗନି ବନସ୍ତ, ପକ୍ଷୀରାଜ ଘୋଡ଼ା, ସାତତାଳ ପଙ୍କ, ମନପବନ କଠଉ, ଯାଦୁକରି ପଶା, ଉଡ଼ନ୍ତା ଖଟ — ଏଇଭଳି କେତେ କ'ଣ । ଗପ ପରେ ଗପ । ସେ ଗପର ଅନ୍ତ ନାହିଁ ।

ଆପଣ ଯଦି ଆରବଆନ ନାଇଟର ଗପ ପଢ଼ିଥିବେ ତେବେ ନିଶ୍ଚୟ ଜାଣିଥିବେ ଯେ ସେଥିରେ ନିଦାରୁଣ ନିଷ୍ଠୁର ସୁଲତାନ କିପରି ତା'ର ଆସନ୍ନମୃତ୍ୟୁ ସୁନ୍ଦରୀ ପ୍ରେୟସୀର କଳକଣ୍ଠରୁ ହଜାର ରଜନୀର ବିଚିତ୍ର ରସାଳ ଗଳ୍ପଗୁଡ଼ିକ ଶୁଣିଶୁଣି ଆତ୍ମ ବିଭୋର ହୋଇ ନିଜର ପଣ ପାଶୋରି ପକାଇଥିଲା ।

ଗପ ଶୁଣିବା ଓ ଶୁଣାଇବାର ଏଇ ଆକାଙ୍‌କ୍ଷା ଶାଶ୍ୱତ । ମଣିଷ ମନର ଏକ ଚିରନ୍ତନ କୁହୁ ।

ଆଜି ବିଜ୍ଞାନର ଅଗ୍ରଗତି ତୁଙ୍ଗା ଛୁଇଁଛି । ଉଚ୍ଚ ସଫଳତାର ଚେନତ । ବିଜୟର ନିଶାଣ । ବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ଆମେ ମାନବ ଭିତରର ଏଇ ଗପ ଶୁଣିବାର ଶିଶୁ ମନଟିକୁ, ସେରନ୍ତା ପ୍ରବଣତାଟିକୁ ଖୋଜିଲେ ପାଇବୁ ନା ନାହିଁ !!

ମୁଁ ବିଜ୍ଞାନର କିମ୍ବଦନ୍ତୀ କଥା କହୁ ନାହିଁ । ନିଉଟନ ତାଙ୍କର ବଗିଚାରେ ବସିଥିବା ଅବସ୍ଥାରେ ଗୋଟିଏ ଆପଲ ଫଳ ଖସି ପଡ଼ିଥିଲା । ଯାହା ଫଳରେ ମାଧ୍ୟାକର୍ଷଣ ତତ୍ତ୍ୱର ଆବିଷ୍କାର । ଆର୍କିମିଡ଼ିଜ୍ ଗାଧୋଉଥିବା କୁଣ୍ଡରୁ ଉଲଗ୍ନ ଅବସ୍ଥାରେ "ପାଇଲି, ପାଇଲି" (ଇଉରେକା) ବୋଲି ଚିତ୍କାର କରି ସିରାକ୍ୟୁଜର ରାସ୍ତାରେ ଧାଇଁ ଧାଇଁ ଯାଇଥିଲେ । କାରଣ ସେ ବସ୍ତୁର ଆପେକ୍ଷିକ ଗୁରୁତ୍ୱ (specific gravity)ର ତାତ୍ପର୍ଯ୍ୟ ବୁଝି ପାରିଥିଲେ । କେକୁଲେ ସ୍ୱପ୍ନରେ ଅବଚେତନ ମାନସର ଦ୍ୱନ୍ଦ୍ୱ ମଧ୍ୟରେ କେତେଗୁଡ଼ିଏ ସର୍ପଙ୍କୁ ଷଡ଼ଭୁଜ କ୍ଷେତ୍ର ଆକାରରେ ଯୋଡ଼ି ହୋଇଯିବାର ଦେଖିଲେ । ତା'ପରେ ବେନ୍‌ଜିନ୍ ଅଣୁର ଗଠନ ବିନ୍ୟାସ ଦେଇ ପାରିଥିଲେ । ପାଷ୍ଟୁର ଗବେଷଣାଗାରରେ ଗବେଷଣାରତ ଅବସ୍ଥାରେ ନିଜର ବିବାହର ଦିନ ପର୍ଯ୍ୟନ୍ତ ବି ପାଶୋରି ଯାଇଥିଲେ । ଏଇପରି ଖୋଜିଲେ ବିଜ୍ଞାନର ପ୍ରତି ପାହାଚରେ ବହୁତ କିମ୍ବଦନ୍ତୀ ମିଳିବ ।

କିନ୍ତୁ କେବଳ କିମ୍ବଦନ୍ତୀ ନେଇ ବିଜ୍ଞାନର ଯାତ୍ରାପଥ ଉଚ୍ଛ୍ୱସିତ ଓ ଗୌରବମୟ ହୋଇ ନାହିଁ । ଏହା ନିଜସ୍ୱ ଦରବାର ଅଛି । ବତିଶ ସିଂହାସନ ଅଛି । ମଙ୍ଗଳାଷ୍ଟକ ଅଛି । ତେଣୁ ଏହାର ଚାରଣ କବି ଆଜି ନବରତ୍ନ ବି ଅଛନ୍ତି । ଏଇ ଚାରଣ କବିଙ୍କର ଗୀତି କବିତାକୁ ବିଜ୍ଞାନର ରୂପକଥା (science fiction) କହୁ ।

ତେବେ ଗୋଟିଏ କଥା ସତ ଯେ, ଏହି ରୂପ କଥାର ନିଜସ୍ୱ ପଦ୍ଧତି ଅଛି। ଶୈଳୀ ଅଛି। ନିଜର ଭାବ, ବିଭାବ ଓ ପ୍ରକାଶ ଭଙ୍ଗୀ ଅଛି। ଏହା ବିଜ୍ଞାନର ପଦ୍ଧତି। ଯାହା ସହିତ ଆମେ ନିଉଟନଙ୍କ ପରଠାରୁ ବିଶେଷଭାବେ ପରିଚିତ ହୋଇ ଆସିଛୁ।

ଆମର ଏଇ ବୈଜ୍ଞାନିକ **Fiction** ର ରୂପ ତା'ହେଲେ କଅଣ ?

ପ୍ରଫେସର ଟଏନ୍‌ବି ତାଙ୍କ **Study of History** ରେ ଠାଏ କହିଛନ୍ତି ଯେ ଯାଯାବର ଜାତି ପୁରାଣ ସୃଷ୍ଟି କରେ। ସେଇ ମାନଦଣ୍ଡରେ ଦେଖିଲେ ବୈଜ୍ଞାନିକ ସବୁବେଳେ ପୁରାଣ ସୃଷ୍ଟି କରିବ। ତା'ର କବି ବା ବ୍ୟାସଦେବ ସବୁବେଳେ ସାତକାଣ୍ଡ ରାମାୟଣ ଓ ଅଠରପର୍ବ ମହାଭାରତହିଁ ବୟାନ କରିବ। କାରଣ ତା'ର ଅନ୍ତର୍ନିହିତ ପ୍ରକୃତିହିଁ ଯାଯାବର। ସେ ଗୋଟିଏ ଯାଗାରେ ସ୍ଥିର ହୋଇ ରହି ପାରିବ ନାହିଁ।

ପ୍ରକୃତରେ ଦେଖିବାକୁ ଗଲେ ବିଜ୍ଞାନର ଏଇ ରସ ଆଉ ସାହିତ୍ୟ ସୃଷ୍ଟି ମୁଖ୍ୟତଃ ଗୋଟିଏ "ଆଶ୍ଚର୍ଯ୍ୟ"ର କାହାଣୀ (Tale of wonder)। ବୁଢ଼ୀମା ଗପଠାରୁ ଏହା ଏତିକି ତଫାତ ଯେ, ଏହା ଆଧୁନିକ ବିଜ୍ଞାନର ଉଦ୍ଭାବନ ଓ ଆବିଷ୍କାର ସକଳର ଏକ ଯୁକ୍ତି ଯୁକ୍ତ ସିଦ୍ଧାନ୍ତ ରୂପରେ ଆମ ଆଗରେ ପରଶା ଯାଇଥାଏ। ତେଣୁ ଆମକୁ ଏହା ଅସମ୍ଭବ ପ୍ରତୀୟମାନ ହୁଏ ନାହିଁ। ଇଆର କାହାଣୀର ପ୍ରତି ଛତ୍ରରେ ରହିଛି ନୂତନ ଆବିଷ୍କାରର ଚମତ୍କାରିତା, ଆଶ୍ଚର୍ଯ୍ୟତା ଓ ଅପ୍ରତ୍ୟୟତା। କାରଣ ଇଆର ମାଧ୍ୟମ ତାକୁ ସବୁବେଳେ ଏଇପରି ଏକ ପରିଣତି ଆଡ଼କୁ ସ୍ୱତଃ ନେଇଯାଏ।

ଏହି ରସ ସୃଷ୍ଟିର କେତେକ ନିୟାମକ ରହିଛି । ଯାହାର ଶୃଙ୍ଖଳା ଏହି ସୃଷ୍ଟିର ଚତୁଃପାଖେ ଏକ ନିଗଡ଼ ସରହଦ୍ଦ ବାନ୍ଧି ଦେଇ ଥାଇଛି । ଯାହାର ମେଘନାଦ ପାଚେରି ଟପି ଏହା ବାହାରକୁ ଯାଇ ପାରିବ ନାହିଁ ।

ବୈଜ୍ଞାନିକ ସାହିତ୍ୟ ଯେଉଁ ବିଷୟଗୁଡ଼ିକୁ ନେଇ ରମ୍ୟରଚନା କରେ, ସେଗୁଡ଼ିକ ଆଲୋଚନା କଲେ ଏଇ ଧାରଣା ପରିଷ୍କାର ହୋଇଯାଏ । ପଦାର୍ଥ ବିଜ୍ଞାନ, ରସାୟନ ଶାସ୍ତ୍ର, ଜୀବ ବିଜ୍ଞାନ, ଉଦ୍ଭିଦ ବିଜ୍ଞାନ ଓ ଖଗୋଳ ବିଜ୍ଞାନ ଇତ୍ୟାଦିର ଅତ୍ୟାଧୁନିକ ଆବିଷ୍କାର ଓ ଉଦ୍ଭାବନ ସକଳର ପ୍ରଭାବ ଓ ପରିଣତି ଏବଂ ଏଇ ପ୍ରଭାବ ଓ ପରିଣତି ତା'ର ବିକାଶ କାଳରେ ଯେଉଁ ଉଜ୍ଜଳ ରୂପ ନେଇପାରେ ତାହା ନେଇ ମୁଖ୍ୟତଃ ଏଇ ସାହିତ୍ୟ ସୃଷ୍ଟି । ଆଣବିକ ପ୍ରଳୟ, ଗ୍ରହାନ୍ତର ଭ୍ରମଣ, ଜଳଦସ୍ୟୁ ପରି କୌଣସି ଦୂର ସ୍ୱର୍ଗର ଅନନ୍ତ ପଥ ମଧ୍ୟରେ ପୃଥ୍ୱୀ ଦସ୍ୟୁର ଅତର୍କିତ ଆକ୍ରମଣ; ଅନ୍ୟ ପୃଥିବୀ ସହ ସଂଘର୍ଷ, ଉଭୟର ଆକସ୍ମିକ ବୈଷମ୍ୟ; ଆକସ୍ମିକ ପରିବର୍ତ୍ତନ, ଯାନ୍ତ୍ରିକ ମନ, ମାନସିକ ଯନ୍ତ୍ର, ରୋବଟ୍, ଅଟୋମାଟନ୍, ଗତିଶୀଳ ଉଦ୍ଭିଦ, ଟେଲିପାଥି, ତ୍ରିକାଳ ଭ୍ରମଣ, ନବଲୋକ ଯାତ୍ରା, ନୂତନ ପରଶମଣି, ନୂତନ ଆଲାଦିନର ଦୀପ, ନୂତନ ଗ୍ରହର ଅଧିବାସୀଙ୍କର କୌତୁହଳ ଉଦ୍ଦୀପକ ଜୀବନ ଚରିତ, ନୂତନ ପ୍ରକାର ବିବର୍ତ୍ତନ ବାଣୀ—ସ୍ଥୂଳତଃ ଏହି ବିଷୟବସ୍ତୁଗୁଡ଼ିକ ନେଇ ବୈଜ୍ଞାନିକ ସାହିତ୍ୟ ଗଢ଼ିତ । ସୁତରାଂ ଆଧୁନିକ ସେର୍ଲକ୍ ହୋମ୍ସ୍, ପେରିମାସନ୍ ଗପ, Cowboy stories ଓ Crime Thrillers ଠାରୁ ଏହା ଯେ ଅଧିକ ଲୋକପ୍ରିୟ ହେବ ଏଥିରେ ସନ୍ଦେହ ନାହିଁ ।

ଏଇ ବହିଃପ୍ରକୃତିର ପ୍ରକାଶ ଓ ବିକାଶ ଭଙ୍ଗୀର ସ୍ଥାନ କାଳ ସୀମା ନାହିଁ । ପଦାର୍ଥ ବିଜ୍ଞାନ ଆମକୁ ଅସୀମର ସନ୍ଧାନ ଦେଇଛି । ସୁତରାଂ ଆମର ନାୟକ ଗଗନ ବିହାରୀ । ତ୍ରିଲୋକଗାମୀ । ତା'ର ଗତିରେ ସୂର୍ଯ୍ୟ, ଛାୟାପଥ, ତାରକା, ନେବୁଲା, ବାହ୍ୟବିଶ୍ୱ ସବୁଆଡ଼େ ଅବାଧରେ ବିଚରଣ କରିପାରେ । ସ୍ଥାନର ସୀମା ତା ପକ୍ଷରେ ଅର୍ଥ ହୀନ । ପୁଣି କାଳର ସୀମା ବି ତା ପକ୍ଷରେ ତାତ୍ପର୍ଯ୍ୟହୀନ । କାରଣ ସେ ଯଦି ତା'ର ଯାନଟିକୁ ଏପରି ଗତି ଦେଇପାରେ ଯହିଁରେ କି ଆଲୋକର ଗତିଠାରୁ ସେ ଅଧିକ ବେଗରେ ଯାଇ ପାରିବ ତେବେ ସେ ହୁଏତ ଅତୀତ ଭିତରକୁ ଚାଲିଯାଇ ପୁଣି ଥରେ କଲମ୍ବସଙ୍କ ଆଗରୁ ଆମେରିକା ଆବିଷ୍କାର କରିବ । କିମ୍ବା ହୁଏନ୍‌ସାଂଙ୍କ ଆଗରୁ ଭାରତ ଭ୍ରମଣ କରି ପାରିବ ।ନହେଲେ ପୁଣି ଥରେ ନୂତନ ଉଦ୍ଦୀପନାର ଫରାସୀ ବିପ୍ଳବରେ ଯୋଗ ଦେଇ ସାମ୍ୟ ଓ ଭ୍ରାତୃତ୍ୱ ଇନ୍‌କିଲାବ ବା ଜିନ୍ଦାବାଦ ଧ୍ୱନିରେ ନିଜର ପ୍ରବୃତ୍ତି ଚରିତାର୍ଥ କରି ପାରିବ ।

ସୁତରାଂ ବିଜ୍ଞାନର ସାହିତ୍ୟ ଏକ ମୁକ୍ତ ଛନ୍ଦ । ତା'ର ସୀମା ସରହଦ ନାହିଁ । ବନ୍ଧନ ନାହିଁ । ପରମେଶ୍ୱର ନାହିଁ । ସେ ମୁକ୍ତ । ସ୍ୱାଧୀନ ସ୍ୱାଧୀନ । ତେଣୁ ତା'ର ମନସ୍ତତ୍ତ୍ୱର Inhibition ନାହିଁ । ବାଧା ପ୍ରାପ୍ତ ହବଣତା ନାହିଁ । subconscious ବା ଅବଚେତନ ମନର ଦହନ ନାହିଁ । ତାର ବାଦ (ism) ନାହିଁ, ବିବାଦ ନାହିଁ । ରାଜନୈତିକ ଧ୍ୱନି ନାହିଁ । ଧର୍ମର ଧ୍ୱନି ନାହିଁ । ତେଣୁ ସାହିତ୍ୟର ଦୁଇଟି ଦେବତା—ମାର୍କସ ଓ ଫ୍ରଏଡ଼—ତା' ପକ୍ଷରେ କେବଳ ଧ୍ୱନି ସୂଚକ ଶବ୍ଦ ମାତ୍ର । ଅର୍ଥହୀନ, ଉଦ୍ଦେଶ୍ୟହୀନ, ତାତ୍ପର୍ଯ୍ୟହୀନ ଅକ୍ଷରର ସମାହାର ।

ବିଜ୍ଞାନ ବାଧା ନାହିଁ । ତେଣୁ ବିଜ୍ଞାନର "ରାଧା" ନାହିଁ । ଯାହା ପାଇଁ ସେ ଯମୁନା ପୁଳିନରେ ମୁରଲୀ ସ୍ୱନର କରୁଣ କବିତା ରଚନା କରିବ । ତେଣୁ ବିଜ୍ଞାନର ସାହିତ୍ୟରେ ନାୟିକା ନେଇ ରମ୍ୟରଚନା ନାହିଁ । ସେଠି ନାହିଁ ମହାନଦୀର ଜ୍ୟୋତ୍ସ୍ନା ବିହାର । ନାହିଁ ସହକାର ତଳେ ପ୍ରିୟାର କରକଙ୍କଣର ନିସ୍ୱନ । ନାହିଁ ଭଲ ପାଇବା ନେଇ ପ୍ରିୟାର ପୀଡ଼ିତ ପ୍ରାର୍ଥନା । —ବିଜ୍ଞାନର ସାହିତ୍ୟରୁ ନାୟିକା ଯେପରି ନିର୍ବାସିତା । ହୁଏତ କେହି ଜଣେ ନୂତନ "ପୋପ୍" ଏଇଆକୁ ନେଇ ନିର୍ଜନ ଦ୍ୱୀପରେ ନିର୍ବାସିତାର ବିଳାପ ରଚନା କରିପାରେ ।

ବିଜ୍ଞାନର ଅନ୍ଧକାର ଯୁଗ ନାହିଁ । ସୁବର୍ଣ୍ଣ ଯୁଗ ନାହିଁ । ତେଣୁ ତା'ର ସାହିତ୍ୟରେ ନରକ ନାହିଁ । ବୈକୁଣ୍ଠ ନାହିଁ । ନୀତି (moral) ଓ ସାମାଜିକ ପ୍ରଶ୍ନ ଜନିତ ଘଣ୍ଟା ଚକଟା, ଆଲୋଡ଼ନ, ଆନ୍ଦୋଳନ, ହଇଚଇ, ଅନ୍ତଃସ୍ଥିତା ନାହିଁ ।

ସୁତରାଂ ବୈଜ୍ଞାନିକ ସାହିତ୍ୟ କଳାର ଏକ ନୂତନ ଓ ପରୀକ୍ଷାବିହୀନ ସୃଷ୍ଟି । ମୁଖ୍ୟତଃ ଏହା ଆମ ଆଗରେ ଏକ "ଆଶ୍ଚର୍ଯ୍ୟ"ର କାହାଣୀ ଓ "ପଳାୟନ" ସାହିତ୍ୟ ରୂପରେ ପ୍ରତିଭାତ ହୁଏ । ଗତାନୁଗତିକ ସାହିତ୍ୟଠାରୁ ଏହା ଗୋଟିଏ ଗୁଣରେ ଉଚ୍ଚତର । ତାହା ହେଉଛି ଏଇଆ ଯେ ଏହି ଅସମ୍ଭବ ଓ ଆଶ୍ଚର୍ଯ୍ୟ କାହାଣୀଗୁଡ଼ିକ ଅନ୍ୱୀକ୍ଷା ଓ ଯୁକ୍ତିର ସୂତାରେ ଗୁନ୍ଥା ହୋଇ ଆମକୁ ଦିଆ ଯାଇଥାଏ । ଆମେ ଗପ ଶୁଣିବାକୁ ଭଲ ପାଉ ସତ । ଆଲ୍ଲାଦୀନଦୀପ, ଅସୁର ଅସୁରୁଣୀ, ବେତାଳ, କୋକମିନା ଓ ଭୂତ ଗପଗୁଡ଼ିକ ଆମକୁ ଭଲ ଲାଗେ । ଭୟ ଲାଗେ, ଅସମ୍ଭବ ବି ଲାଗେ । କିନ୍ତୁ ଆମେ ଯଦି ଜାଣୁ ଯେ ଆଲ୍ଲାଦୀନ୍‌ର ଦୀପର ସ୍ପର୍ଶରେ

ନୂହେଁ, କୌଣସି ନିଗୂଢ଼ ବୈଦ୍ୟୁତିକ ରସାୟନିକ ପ୍ରକ୍ରିୟାଦ୍ୱାରା ଶୁଷ୍କ ସାହାରା ମଧ୍ୟରେ ସହସା ପାରିଜାତ ପ୍ରସ୍ଫୁଟିତ ହୋଇ ଯାଉଛି — ଯଦି ଜାଣୁ ଯେ ଏଇ ଅସୁର ଅପ୍ସରୁଣୀ ଓ ଭୂତ ବେତାଳ ଗୁଡ଼ିକ ଅନ୍ୟ ଗ୍ରହର ଅଧିବାସୀ ଯେ କି ସେହି ଗ୍ରହର ଉତ୍ତାପର ଘରମାସ୍ୟ (thermodynamic equilibrium) ଫଳରେ ଉତ୍ତାପର ଆଧିକ୍ୟରୁ ରକ୍ଷା ପାଇବା ପାଇଁ ଆମର ପୃଥିବୀକୁ ଆଣବିକଯାନ ସାହାଯ୍ୟରେ ଚଳାଇ ଆସିଛନ୍ତି ; ଆମେ ଯଦି ଜାଣୁ ଯେ ୧୧୦ ନମ୍ବର ମୌଳିକ ପଦାର୍ଥକୁ "ଇପ୍‌ସାଇଲନ୍" କଣିକାଦ୍ୱାରା ପୀଡ଼ନ କଲେ ତାହା ଏପରି ଗୋଟିଏ ରଶ୍ମି ନିର୍ଗତ କରେ ଯାହାକି ଆମର ପ୍ରଜନନ କ୍ଷମତାକୁ ଗଭୀର ଭାବରେ ପ୍ରଭାବିତ କରି ମଣିଷକୁ ରାକ୍ଷସରେ ରୂପାନ୍ତରିତ କରିପାରୁଛି ; ଆମେ ଯଦି ଜାଣୁ ଯେ ଆମର ମସ୍ତିଷ୍କର ସୂକ୍ଷ୍ମତମ ତନ୍ତ୍ରୀଗୁଡ଼ିକରେ ଅହରହ ଯେଉଁ ବୈଦ୍ୟୁତିକ ଆଲୋଡ଼ନ ହେଉଛି ବା ଝାଳ ଭିତରର ବସ୍ତୁ କଣିକାଗୁଡ଼ିକର ନିରନ୍ତର ଯେଉଁ କ୍ୱାଣ୍ଟମ୍‌ଜମ୍ପ ସାଧିତ ହେଉଛି ସେଗୁଡ଼ିକ ଆମର ମସ୍ତିଷ୍କ ଚତୁର୍ଦ୍ଦିଗରେ ଚୁମ୍ବକ ବା ବୈଦ୍ୟୁତିକ Field of Force ପରି ଏକପ୍ରକାର ଫିଲ୍ଡ଼ ସୃଷ୍ଟି କରୁଚନ୍ତି ଏବଂ ରେଡ଼ିଓ ରିସିଭର ସେଟ୍ ପରି ଆମେ ଯଦି ଗୋଟିଏ ଯନ୍ତ୍ର ତିଆରି କରି ସେଗୁଡ଼ିକ ଧରି ରଖି ପାରୁଚୁ ଓ ତଦ୍ୱାରା ମଣିଷ ମନର କଥା ଜାଣି ପାରୁଚୁ ବା କାହା ଚରିତ ବଶୀଭୂତ ହୋଇ ପାରୁଚୁ ତେବେ ଆମକୁ ଆଜି ସେଇ ଅସମ୍ଭବ ଗପଗୁଡ଼ିକ ଅସମ୍ଭବ ଲାଗିବ ନାହିଁ । ବରଂ ଏହି ଗପଗୁଡ଼ିକ ପ୍ରତି ସ୍ୱତଃ ଶ୍ରଦ୍ଧା ଆଉ ବିନମ୍ର ଭାବ ଆସିବ ।

କିନ୍ତୁ ଦୁଃଖର କଥା ଏଇଆ ଯେ ଶ୍ରଦ୍ଧା ଆଉ ବିନମ୍ରର ଭାବ ଆମେ ବୈଜ୍ଞାନିକ ସାହିତ୍ୟରେ ଫୁଟାଇ ପାରିବୁ ନାହିଁ । ସାହିତ୍ୟରେ ଚରାଚରର ସ୍ଥାୟୀ ଓ ସଂସ୍କାର ଭାବକୁ ଆମେ

ବିଜ୍ଞାନ ସାହିତ୍ୟର ରସ ଛନ୍ଦ ଓ ସମନ୍ୱୟରେ ଜଡ଼ାଇ ରଖିବାକୁ ଅକ୍ଷମ । ବିଜ୍ଞାନ ବିବରଣାତ୍ମକ ( statistical) । ମନୋନୟନ (sel ction) କରେ । ତେଣୁ ବିଜ୍ଞାନର ସାହିତ୍ୟରେ କେବଳ ଭରି ରହିବ ଆଦିମ ଭାବ, ବିଭାବ ଆଉ ଅନୁଭାବ ଯେତେକ । କଳ୍ପନା କରନ୍ତୁ ପୁରାତନ ପ୍ରସ୍ତର ଯୁଗର ବା ନୂତନ ପ୍ରସ୍ତର ଯୁଗର କୌଣସି ଏକ ଗୋଷ୍ଠୀନାୟିକା ଦିନେ ମୃଗୟାରେ ବାହାରିଗଲା । ଦିନପରେ ଦିନ ଗଲା । ଆଉ ଫେରିଥିଲା ନାହିଁ । ପୁରାତନ ପ୍ରସ୍ତରଯୁଗ ମାନବ ବା ସଭ୍ୟତାର ସେହି ଅଜଣା ପ୍ରତି ଆଶଙ୍କା ଆଉ ଭୟ – ଠିକ୍ ସେହିପରି ଆମର ଗ୍ରହଗ୍ରହାନ୍ତର ଅନିଶ୍ଚିତ ଭ୍ରମଣର ଫଳାଫଳ । ଆମର ଅନୁଭାବନା ଠିକ ସେହି ପୁରାତନ ପ୍ରସ୍ତର ଯୁଗର ମାନବ ପରି ହେବାକି ନାହିଁ ! କଳ୍ପନା କରନ୍ତୁ – ଆମେ ଦିନେ ଆମୋଦ ଭ୍ରମଣରେ, ଧରନ୍ତୁ ଦଶହରା ବା ନୂଆ ଖାଇ ଛୁଟିରେ ଏକ ଆଣବିକ ଯାନରେ "ଆସ୍ଥର" ନାମକ ଏକ ଦୂର ଗ୍ରହକୁ ବାହାରିଗଲୁ । ସେଠି ଓହ୍ଲାଇ ସାରିଲା ପରେ ଆମେ ଆମର ବନ୍ଧୁମାନଙ୍କୁ ନେଇ ବ୍ରିଜ ଖେଳି ପାରିବୁ ନାହିଁ । ବା ପ୍ରେୟସୀକୁ ନେଇ ଛବି ଆଙ୍କି ପାରିବୁ ନାହିଁ । କାରଣ ଆମ ଆଗରେ ଆସି ଠିଆ ହେବ ଆଦିମ ମାନବର ସେହି ପ୍ରଶ୍ନ । ଏଠି କୌଣସି ନୂତନ ଶକ୍ତିଶାଳୀ ଜୀବ ଅଛି ନା ନାହିଁ ! ଏଠି ଅମ୍ଳଜାନ ଅଛି ନା ନାହିଁ ! ଏଠି ଜୀବନ ନାଶକାରି ବିଷାକ୍ତ କାର୍ବନ୍ ମନୋକ୍ସାଇଡ଼୍ ବାଷ୍ପର ଆଧିକ୍ୟ ରହିଛି ନା ନାଇ ! ଏଠି ଜୀବନର ପରିପନ୍ଥୀ ଅନ୍ୟ କୌଣସି ଅଜଣା ଜଡ଼ ବା ଜୀବ ଅଛି କି ନାଇ !!

ସୁତରାଂ ଆମେ ବୁଝି ପାରୁଚୁ ଯେ ଆମର ଏଇ ସାହିତ୍ୟରେ ଚରିତ୍ର ଚିତ୍ରଣ (Character painting) ରହି ପାରିବ ନାହିଁ । କାରଣ ଆଦିମ ମାନବର ସମସ୍ୟା ପରି ଆମର ସମସ୍ୟା ମାନସିକ

ବନ୍ଦର ସମସ୍ୟା ନୁହେଁ । ଜୀବନ ରକ୍ଷାହିଁ ଆମର ସମସ୍ୟା । ନୂତନ ଜୀବନର ପରୀକ୍ଷାହିଁ ଆମର ସମସ୍ୟା ।

ଜେମ୍‌ସ୍ ବ୍ଲିସ୍ "ବିବେକର ଡାକର" (A case of conscience) ବୋଲି ଗୋଟିଏ ଗପ ଲେଖିଥିଲେ । ସେଥିରେ ଖ୍ରୀଷ୍ଟଜଣ ବୈଜ୍ଞାନିକଙ୍କର "ଲିଥିଆ" ନାମକ ଗ୍ରହ ଯାତ୍ରାର ବିବରଣୀ ଉଲ୍ଲେଖ ରହିଛି । ସେଠି ପହଞ୍ଚି ସେମାନେ କଅଣ ଦେଖିଲେ ? ? ସେମାନେ ଦେଖିଲେ ଯେ, "ଲିଥିଆ"ରେ ବିବର୍ତ୍ତନ ବା ଜୀବର କ୍ରମ ଅଭ୍ୟୁଥାନ ଗାଥା ଏକ ନୂତନ ଭୂମିକା ନେଇଛି । ଆମର ସାଧାରଣ ଧାରଣା ଅନୁସାରେ ଗୋଟିଏ ଭ୍ରୂଣ ଭୂମିଷ୍ଠ ହେବା ପୂର୍ବରୁ ମାତୃଗର୍ଭରେ ଅଳ୍ପକାଳ ମଧ୍ୟରେ ବିବର୍ତ୍ତନର ସମସ୍ତ ପାହାଚ ଦେଇ ଗତି କରି ଆସେ । କିନ୍ତୁ "ଲିଥିଆ"ରେ ସେମାନେ ଦେଖିଲେ ଯେ ଏହି ଧାରା ମାତୃ ଗର୍ଭର ବାହାରେ ସଙ୍ଘଟିତ ହେଉଛି । ସୁତରାଂ ସେମାନେ ଏଇ ସିଦ୍ଧାନ୍ତରେ ଉପନୀତ ହେଲେ ଯେ ଧରାର ସମସ୍ତ ଭୂତାତ୍ତ୍ୱିକ ପ୍ରମାଣ ଇତ୍ୟାଦି ବିବର୍ତ୍ତନର ଧାରା ପ୍ରମାଣିତ କରି ପାରିବ ନାହିଁ । ଥରେ ଏହା ମାନି ନେଲେ ପୃଥିବୀ ସଭ୍ୟତାର ବହୁତ ଧାରଣା ଅର୍ଥହୀନ ହୋଇଯିବ । ସୁତରାଂ ସେମାନେ ସେ ଗ୍ରହରୁ ପଳାୟନ କଲେ ।

ଫିଲିପ୍ ଲାଥାମ୍ "Xi Effect" ଶୀର୍ଷକ ଗୋଟିଏ ଗଳ୍ପ ଲେଖିଥିଲେ । ତହିଁରେ "ଫ୍ରିଡ୍‌ମ୍ୟାନ୍" ନାମକ ଜଣେ ବୈଜ୍ଞାନିକ ଏହି ତତ୍ତ୍ୱ ଉଦ୍ଭାବନ କରିଥିଲେ । ତାଙ୍କର ତତ୍ତ୍ୱ ଅନୁସାରେ ଆମର ଏଇ ସ୍ଥାନୁକାଳ (space-time continuum) ଏକ ବୃହତ୍ତର ଜାଗତିକ ସ୍ଥାନୁକାଳ ବା Xi space-time ର ଅଂଶ ବିଶେଷ ମାତ୍ର । ସମୟ ସମୟରେ ଏହି ଜାଗତିକ ସ୍ଥାନୁକାଳରେ କୌଣସି ଆନ୍ଦୋଳନ

ଯୋଗୁଁ ଆମର ବିଶ୍ୱର ସଂକୋଚନ ହେବ । ଏହା ଫଳରେ ତଡ଼ିତ ଚୁମ୍ବକୀୟ ତରଙ୍ଗର ତରଙ୍ଗ ଦୈର୍ଘ୍ୟ ବ୍ୟତୀତ ଅନ୍ୟ ସମସ୍ତ ବସ୍ତୁ-ଗୁଡ଼ିକ ସମାନଭାବରେ ସଙ୍କୁଚିତ ହେବ । କ୍ରମେ କ୍ରମେ ବିଭିନ୍ନ ତରଙ୍ଗ ଦୈର୍ଘ୍ୟ ବିଶିଷ୍ଟ ତଡ଼ିତ ଚୁମ୍ବକୀୟ ତରଙ୍ଗ ଓ ଆଲୋକ ତରଙ୍ଗଗୁଡ଼ିକ ଆଉ ଆମକୁ ଦେଖାଯିବ ନାହିଁ ।— ଫଳରେ ବିଶ୍ୱ ଶ୍ରୀହୀନ ହୋଇ ଚିରନ୍ତନ ତମସାରେ ପରିଣତ ହୋଇଯିବ ।

ଏହିପରି କେତୋଟି ବୈଜ୍ଞାନିକ ଗଳ୍ପର ଉଦାହରଣ ଦେଲେ ପରିଷ୍କାର ହୋଇଯିବ ଯେ ଆମର ବୈଜ୍ଞାନିକ ସାହିତ୍ୟ ମୁଖ୍ୟତଃ ଏହିପରି ସମସ୍ୟାମାନ ନେଇ ବ୍ୟସ୍ତ । ସାହିତ୍ୟର ବିଭିନ୍ନ ଆନ୍ଦୋଳନ, ଯଥା — ରମ୍ୟବାଦ ଆନ୍ଦୋଳନ, ବସ୍ତୁବାଦ ଆନ୍ଦୋଳନ ଇତ୍ୟାଦି ଏହାକୁ ସ୍ପର୍ଶ କରି ପାରିବ ନାହିଁ ।

ଏଠାରେ ଗୋଟିଏ କଥା କହି ରଖିବା ଉଚିତ ହେବ । ଆମେ ଜାଣୁ ଯେ ଶିଳ୍ପ ବିପ୍ଳବ ପରେ ଓ ଊନବିଂଶ ଶତାବ୍ଦୀର ଶେଷଭାଗ ଆଉ ବିଂଶ ଶତାବ୍ଦୀର ପ୍ରଥମ ଭାଗ ସୁଦ୍ଧା ସାହିତ୍ୟ ବିଜ୍ଞାନର ବିଭିନ୍ନ ଆବିଷ୍କାର ଓ ଉଦ୍ଭାବନର ପ୍ରଭାବ ଓ ପରିଣତି ଉପରେ ଅନେକ ଆଲୋଚନା କରିଛି । କିନ୍ତୁ ସେ ସାହିତ୍ୟ ଆମର ଆଲୋଚିତ ବୈଜ୍ଞାନିକ ସାହିତ୍ୟଠାରୁ ପୃଥକ । ଉଦାହରଣ ସ୍ୱରୂପ ଏଚ୍. ଜି. ଓ୍ୱେଲ୍ସଙ୍କ First men on the moon ; Invi-sible man ; Shape of Thnings to come ; Time machine ; War of the worlds ; When the sleeper awakes ଏବଂ stolen Bacillvn ଇତ୍ୟାଦି; ରୁଡ଼ିୟାର୍ଡ କିପ୍ଲିଙ୍ଗଙ୍କ Aerial board of Control ; ଇ-ଏମ୍. ଫରେଷ୍ଟରଙ୍କ the machine stops ଇତ୍ୟାଦି । ଏଗୁଡ଼ିକ ଏକ ବୈଜ୍ଞାନିକ

ରମ୍ୟବାଦ ଆନ୍ଦୋଳନରେ ସୂତ୍ରପାତ କରିଥିଲା ମାତ୍ର । କିନ୍ତୁ ଏହି ସବୁ ବହିଗୁଡ଼ିକରେ ଏକ ନିଛକ ଆତ୍ମ ପ୍ରତ୍ୟୟ ଆଉ ବଳିଷ୍ଠ ଆଶାବାଦ ଜାଗ୍ରତ ଥିଲା । ପରବର୍ତ୍ତୀ କାଳରେ ଆଶାବାଦ ନିରାଶାବାଦରେ ରୂପାନ୍ତରିତ ହେଲା । ଆତ୍ମପ୍ରତ୍ୟୟ ଅନୁଶୋଚନାରେ ପରିଣତ ହେଲା । ଯେମିତି ହକ୍ସଲିଙ୍କ Brave New world । ଏଠି ଶାସନ ହାତକୁ ବୈଜ୍ଞାନିକର ସବୁ କ୍ଷମତା ଆସିଗଲା । ଫଳରେ ବିଜ୍ଞାନର ପ୍ରେରଣା ସହିଷ୍ଣୁତା ଉଭେଇ ଗଲା । ଏଇସବୁ ଆଲୋଚନାଗୁଡ଼ିକ ସମସାମୟିକ ସାହିତ୍ୟର ଓ ଭାବଧାରାର ଅଙ୍ଗ-ରୂପେ ନୀତି, ସମାଜ, ରାଜନୀତି ଓ ଅର୍ଥନୀତି ଉପରେ ବିଜ୍ଞାନର ପ୍ରଭାବଗୁଡିକ ପ୍ରତି ଚିନ୍ତାନାୟକମାନଙ୍କ ଦୃଷ୍ଟି ଆକର୍ଷଣ କରୁଥିଲା ମାତ୍ର । କିନ୍ତୁ ଏହା ପରବର୍ତ୍ତୀ କାଳର ବିଜ୍ଞାନର ଅନେକ ଆବିଷ୍କାର ଓ ଉଦ୍ଭାବନ ପରିକଳ୍ପନା କରି ନ ଥିଲା । ଫଳରେ ତହିଁରେ ଏ ଚିନ୍ତ୍ରତି, ଏପରି ସ୍ଥାନ କାଳ ପାତ୍ର ନିରପେକ୍ଷତା ନ ଥିଲା ।

ମୋଟ ଉପରେ କହିବାକୁ ଗଲେ ଆମର ଅଧୁନାତନ ବୈଜ୍ଞାନିକ ସାହିତ୍ୟ, ସାହିତ୍ୟର ଏକ ନୂତନ ଦିଗଦର୍ଶନ ଦେଇଛି । ତାକୁ ଦେଇଛି ନୂତନ ଆଙ୍ଗିକ । ସେଥିରେ ହୁଏତ ରହିଛି ନିରାଶା. ଅଳ୍ପ କିଛି ଆଶା, ବହୁତ ଆଶ୍ଚର୍ଯ୍ୟ ଓ ଅପ୍ରତ୍ୟାୟତା । କିନ୍ତୁ ଅଗ୍ରଗତିର ଶିଖର ଦେଶରେ ଥାଇ ଏହା ଆମର ଆଦିମ ଭାବଧାରା ଗୁଡ଼ିକରେ ନୂଆ ଅର୍ଥ ସଞ୍ଚାର କରିଛି । ତହିଁରେ ଭରିଛି ନୂତନ ସ୍ୱାଦ । ଆଉ ଆମକୁ ଦେଇଛି ଅନୁଭବ ଏ ସମ୍ଭାବନାର ଏକ ନୂତନ ସୁରଭି । ଏହାହିଁ ହୁଏତ ମଣିଷର ପୁନଃ ଆବିଷ୍କାର ( Redisco-ven of man ) ।

# ସୃଷ୍ଟି ନା ସ୍ରଷ୍ଟା

ପୁରାଣର ଭସ୍ମାସୁର କଥା କହୁଛି । ଗୋଟିଏ ଅସୁର । ବହୁ କୃଚ୍ଛ୍ର ବ୍ରତ ସାଧି ଶିବଙ୍କୁ ତୋଷିଲା । ଶିବ ପରମ ସନ୍ତୋଷରେ ବରଦାନ କଲେ । ତାପରେ···ଆପଣାର ଆସ୍ଥ ପରଦ୍ଦାତଙ୍କୁ ବଢ଼ାଇ ଦେଇ ଶିବ ତ ବାର ମ୍ଳାନମାନ ହେଲେ । ଅପୋଗଣ୍ଡ ଅସୁର ବି ଶେଷକୁ ନିଜ ଅଜ୍ଞାନତା ଯୋଗୁଁ ଭସ୍ମୀଭୂତ ହେଲା ।

ମୋର କହିବାର କଥା ଏଇଆ ଯେ ଆଜ ବିଂଶ ଶତାବ୍ଦୀର ବିଜ୍ଞାନକୁ ଗୋଟିଏ ଭସ୍ମାସୁର ସଙ୍ଗ ତୁଳନା କରାଯାଇପାରେ । କାରଣ ଏହାର ନିଜ କଥା ତ ଛାଡ଼—ସମୁଦାୟ ପୃଥିବୀକୁ ପାଉଁଶ କରିଦେବାର କ୍ଷମତା ଆସିଗଲାଣି । ଥୋକେ କହନ୍ତି—ଖାଲି କ୍ଷମତା ତ ନୁହେଁ ସମୁଦାୟ ପୃଥିବୀକୁ ଭସ୍ମ କରି ଦେବାର ଅଧିକାର ବି ଆସିଗଲାଣି । ଏମାନେ କହନ୍ତି, ଯେମିତି ନୂଆ ଅର୍ଥନୀତି ନିୟମ ଅନୁସାରେ ବଜାରକୁ ଜିନିଷ ଯୋଗାଇ ଦେଲେ ତା'ର ଚାହିଦା ଆପେ ଆପେ ସୃଷ୍ଟି ହୋଇଯାଏ, ସେଇମିତି କ୍ଷମତା ଆସିଗଲେ ତା'ର ବ୍ୟବହାର ପାଇଁ ଅଧିକାର ବି ଆପେ ଆପେ ଆସିଯାଏ । ଏ କଥା କହିଲାବେଳେ ମୁଁ ପରମାଣୁ ଅବା ହାଇଡ୍ରୋଜେନ ବୋମା କଥାଇ କହୁଛି ।

ସାରା ଜଗତରେ ଆଜ ହଇଚଇ ଖେଳିଚି । ଏଇ କ'ଣ ବୋମା ! ସେଦିନ ଜାପାନୀ ଲୋକଙ୍କର ବୋଧେ ରଷ୍ଟଚନ୍ଦ୍ର ଥିଲା ।

ଅଗଷ୍ଟ ଛ’ ୧୯୪୫ ମସିହା । ସେଦିନ ବୋଧହୁଏ ପଞ୍ଚଗ୍ରହ ମିଶି କୁଠ କରିଥିଲେ । ଅଶରୀରୀ ପବନ ଏକାଠି ରୁଣ୍ଡ ହୋଇଥିଲେ । ହିରୋସୀମାର ବକ୍ଷରେ ଝେଙ୍ଗଲା କ ଏକ ଉଗ୍ର ଉତ୍କଟ ବିସ୍ଫୋରଣରେ ଗୁଞ୍ଜନ । ଉପସ୍ଥିତ ଅଘଟଣ ତ ଘଟିଲା ବହୁତ କଷ୍ଟ । ତା’ର ଅନେକ ଦିନ ପରେ ଶୁଣାଗଲା ଜାପାନୀ ମା’ମାନଙ୍କର ଉଦରର ଆର୍ତ୍ତନାଦ । କେତେ ଶିଶୁ ପୋଗଣ୍ଡ ଅପୋଗଣ୍ଡ, କେତେ ମଣିଷ ମାନବ ପାମର ଅପାମର, କେତେ ଜନନୀ ବନ୍ଧ୍ୟା ଓ ଉର୍ବର, କ୍ଲୀବତ୍ୱ ଲଭିଲେ ତାର ଇୟତ୍ତା ନାହିଁ ।

ଆଜ ସତେ ଯେମିତି ଶୁଣାଯାଉଛି ସେଇ ଜାପାନ ଜନନୀର ଆର୍ତ୍ତନାଦ । ଭାସି ଆସୁଛି ସତେ ଯେମିତି ଜାପାନଜନନୀର ବିଷାଦ ବିଳାପର ଅବିରଳ ରାଗିଣୀ – ମୋ ଉଦର ଶିଶୁକୁ ତମେ ନଷ୍ଟ କର ନାହିଁ; ମୋର ପିଣ୍ଡଗଢ଼ା ଶିଶୁକୁ ମୁଁ ଅଷ୍ଟାବକ୍ର ଦେଖିବା ଚାହେଁ ନାହିଁ; ମୋର ବକ୍ଷକୁ ଦଳିତ ମଥିତ କରି ତମେ ତମର ରୁଦ୍ର ତାଣ୍ଡବ ଅଭିସାର ରଚ ନାହିଁ ଆଉ ।

ଆଜ ଶୁଣାଯାଉଛି "ଜନସ୍‌ଟଲେଙ୍ଗ"ର ନିବେଦନ । ଡାକ୍ତର ଆଇନଷ୍ଟାଇନର ମୃତ୍ୟୁକାଳୀନ ଶେଷ ଅନୁରୋଧ । ପ୍ରଫେସର ଓଲିଫାଣ୍ଟର ଆକୁତି । ଆଲବର୍ଟ ସ୍ୱାଇଜର ଘୋଷଣା । ନୋ, ମୂଲର, ଷ୍ଟୁନର ମତାମତ । ବ୍ରିଟେନର ପରମାଣୁ ବିଜ୍ଞାନୀ ଅନୁଷ୍ଠାନର ବିଜ୍ଞାପନ । ଶୁଣାଯାଉଛି ସିଂହଳ ଓ ଜାପାନର ପ୍ରଧାନମନ୍ତ୍ରୀ ଦ୍ୱୟଙ୍କର ସ୍ପଷ୍ଟ ବିବରଣୀ ।

ଲୋକ ସଭାରେ ଭାରତର ପ୍ରଧାନମନ୍ତ୍ରୀର ସମ୍ବୋର୍ଦ୍ଧନାପୂର୍ଣ୍ଣ ଭାଷଣ । ଜାତିସଙ୍ଘରେ ଭାରତର ଧୁରନ୍ଧରମାନ ରାଜଦୂତରେ ଜମାନବନ୍ଦୀ । —ବନ୍ଦ କର ତମର ଏଇ ଉନ୍ନବର୍ଦ୍ଧିଷ୍ଣୁ ବୋମା

ବିଚ୍ଛୁରଣର ବିନାଶ । ସେଇ ବିବାଦର କଳି ନେଇ ସମଗ୍ର ଗୋଷ୍ଠୀ ପାଇଁ ମାଲିସିରେ ଯୋଗାଡ଼ କରିବାକୁ ଜାତିଆଣ ସଭା ଡାକିବାରେ ଗଡ଼ିରବ ନାହିଁ । ସମଗ୍ର ମାନବ ଗୋଷ୍ଠୀକୁ ଆତ୍ମହତ୍ୟା କରିବାର ପଥ ଖୋଲି ଦିଅ ନାହିଁ ଆଜି । ବନ୍ଦ କର ତୁମର ଏଇ ସୁଦର୍ଶନ ଚକ୍ରର ଅଭିସାର ।

କିନ୍ତୁ ଧ୍ୱଂସ କଣ ଅନିବାର୍ଯ୍ୟ ? ସମଗ୍ର ମାନବ ଜାତି କ'ଣ ଆଜି ଏକ ଗିଜନ୍ଭୂତ ଲଳନା ପରି ଜହର ଖାଇ ଅଗ୍ନିରେ ନିଜକୁ ଝାସ ଦେବାକୁ ବଦ୍ଧ ପରିକର ? ସୃଷ୍ଟି ଯୋଗେ ସତେ କଣ ସ୍ରଷ୍ଟା ଆଜି ଭୟଙ୍କରଭାବେ ବିପଦଗ୍ରସ୍ତ ?

ଏ କଥା ସତ ଯେ ବୋମା ବିସ୍ଫୋରଣ ବେଳେ ବହୁ ଶକ୍ତିଶାଳୀ ଅଦୃଶ୍ୟ ତେଜସ୍କ୍ରିୟ ରଶ୍ମି ନିର୍ଗତ ହୁଏ । ସାରା ବାୟୁମଣ୍ଡଳରେ ଏହି ରଶ୍ମି ଚରିଯାଏ । କାଳକ୍ରମେ ଏଗୁଡ଼ିକ ଧରାପୃଷ୍ଠକୁ ଅବତରଣ କରେ । ବିସ୍ଫୋରଣ ସମୟରେ ଯେଉଁ ସବୁ ତେଜସ୍କ୍ରିୟ ବସ୍ତୁ ପ୍ରସ୍ତୁତ ହୁଏ, ତନ୍ମଧ୍ୟରୁ ଯେଉଁଗୁଡ଼ିକ ସ୍ଥାୟୀ ସେଗୁଡ଼ିକହିଁ ଏକାଳକୁ ରହିଥାଏ । ଏହି ବସ୍ତୁରୁ ନିର୍ଗତ ରଶ୍ମି ବହୁ ରୋଗ ସଙ୍ଗଠିତ କରାଏ । କାନସର, ବାତ, ଉଦରାମୟ, ମନୋବିକାର, ସ୍ନାୟବିକ ଦୁର୍ବଳତା, ରକ୍ତଚାପ ହ୍ରାସ, ଗର୍ଭପାତ, ଯାହା କହିବ କହନ୍ତୁ । ଦେହର କୋଷଗୁଡ଼ିକ ଏହା ଗମ୍ଭୀରଭାବରେ କ୍ଷତିଗ୍ରସ୍ତ କରାଏ । ବଂଶଗତ ଗୁଣକୁ ପ୍ରଭାବିତ କରେ । ବଂଶଗତ ଗୁଣପ୍ରବାହୀ 'ଜିନ୍' (Gene) ଗୁଡ଼ିକର ଆକାର ଓ ପ୍ରକୃତି ନାନା ଉପାୟରେ ବଦଳାଇ ଦିଏ । ଫଳତଃ ବଂଶଗତ ବହୁ ପ୍ରଥା ଓ ପରମ୍ପରାର ସହଜ ବିକାଶ ଭ୍ରଷ୍ଟ ହୋଇ ବିପର୍ଯ୍ୟୟ ଘଟେ ।

ଜୀବନ ବିଜ୍ଞାନର ନିୟମ ଅନୁସାରେ ଏହି ପରିବର୍ତ୍ତିତ ଜନ୍
ଗୁଡ଼ିକ ମାନବ ଶରୀର ବିକାଶ ପକ୍ଷରେ କ୍ଷତିକାରକ । ଏହାର
ସୁଦୂରପ୍ରସାରୀ ପରିଣତି ରହିଛି । ଆଜି ନୁହେଁ କାଲି ନୁହେଁ,
ପୁରୁଷ ପୁରୁଷ ବାଦେ ମଧ୍ୟ ଏହାର କ୍ଷତିକାରୀ ଗୁଣ ପ୍ରକଟିତ ହୁଏ ।
ଏଗୁଡ଼ିକ ଅନ୍ତର୍ନିହିତ ଭାବେ କ୍ଷତିକାରକ । ପୁଣି ଉପସ୍ଥିତ ପରିସ୍ଥିତି
କଥା ବିଚାରକୁ ଆଣିଲେ ଜଣାଯାଏ ଯେମିତି ତାହା ସେହି ଆଶୁ
ପରିଣତିକୁ ମଧ୍ୟ ଅତି ଉତ୍କଟ ଭାବେ ଉପହାସ୍ୟ କରି ପକାଇଛି ।
ବିସ୍ଫୋରଣ ବେଳେ ଯେଉଁ ସବୁ ତେଜସ୍କ୍ରିୟ ବସ୍ତୁ ପ୍ରସୁତ ହୁଏ,
ତା ମଧ୍ୟରୁ ଷ୍ଟ୍ରନ୍ସିଅମ ୯୦ ଗୋଟିଏ । ଏହା ଫଳ, ଫୁଲ, ପତ୍ର,
ଶସ୍ୟ, ଖାଦ୍ୟ ପଦାର୍ଥ ମଧ୍ୟ ଦେଇ ମଣିଷ ମଧ୍ୟରେ ପ୍ରବେଶ କରେ
ଏବଂ କ୍ରମାଗତଭାବେ ମଣିଷର ହାଡ଼ ଓ ମଜ୍ଜାରେ ଜମାଟ ବାନ୍ଧିଥାଏ ।
ଏହି ଷ୍ଟ୍ରନ୍ସିଅମହିଁ ବିଭିନ୍ନ ପ୍ରକାରର କ୍ୟାନ୍ସର ରୋଗ ସୃଷ୍ଟି କରାଏ ।
ବିସ୍ଫୋରଣ ସଙ୍ଗେ ସଙ୍ଗେ, କ୍ରମେ କ୍ରମେ ପୃଥିବୀରେ ମଣିଷ ଶରୀରରେ
ଏଇ ଷ୍ଟ୍ରନ୍ସିଅମ ୯୦ର ପରିମାଣ ବଢ଼ି ବଢ଼ି ଯାଉଛି—ବଢ଼ି ବଢ଼ି
ଯାଉଛି ଏଇ ଅନ୍ତର୍ନିହିତ ଭାବେ ରୋଗୀ ମାନବ ସଂଖ୍ୟାର ପରିମାଣ ।
ପ୍ରତିକାର ? ପ୍ରତିକାର ନାହିଁ । କଳଙ୍କହୀନ ବୋମା ଯେଉଁଥିରୁ
ତେଜସ୍କ୍ରିୟ ରଶ୍ମି ନିର୍ଗତ ହେବ ନାହିଁ—ତାହା ଶୀତଳ ଯୁଦ୍ଧର
ବିବର୍ଣ୍ଣ ବିଜ୍ଞାପନ । ବୋମା ବିସ୍ଫୋରଣଜନିତ ବିପଦରୁ ତ୍ରାଣ ନାହିଁ ।
ଖାଲି ଅଛି ଇଚ୍ଛା, ଆଶା, ଆକାଙ୍କ୍ଷା, କାକୁତି, ମିନତି, ଦୀର୍ଘ
ପ୍ରତୀକ୍ଷା, ଯାହା କିଛି ।

ଆଜି ହୁଏତ ମାରଣ ଘଣ୍ଟରେ ଶୁଣାଯିବ ନିଜ ଅକ୍ଷ ଉପରେ
ଘୂରୁଥିବା ପୃଥିବୀର ଆର୍ତ୍ତନାଦ । ଶୁଣାଯିବ ଜାପାନର କେଉଟଙ୍କ
କରୁଣ ଆତ୍ମକାହାଣୀ । ଶୁଣାଯିବ କେତେ ବିଗତ ଦିନର ଆତ୍ମ-

ଗଣ୍ଡଗୋଳପୂର୍ଣ୍ଣ ଇତିହାସ । ଅକ୍ଟୋବର ୧୯୫୧ । ନଭେମ୍ବର ୧୯୫୨ । ଅଗଷ୍ଟ ୨୦, ୧୯୫୩; ୧-୩-୧୯୫୪; ୨୬ ୩-୧୯୫୪; ନଭେମ୍ବର ୧୯୫୪; ନଭେମ୍ବର ୧୯୫୫; ଅପ୍ରେଲ ୧୯୫୬; ୩୧-୫-୧୯୫୬; ୧୫-୫-୧୯୫୭; ୩୧-୫-୧୯୫୭ । ଆମେରିକା, ରୁଷିଆ ଓ ଇଂଲଣ୍ଡର ବୋମା ବିସ୍ଫୋରଣର କେତେ ଗାରିମା ଗାଥାର କୁହୁକ କାହାଣୀ, କେତେ ନିଃସହାୟ ଲୋକଙ୍କର ଆର୍ତ୍ତନାଦ କ୍ଷୀଣ ହୋଇଯାଇଛି—କେତେ ଦୁର୍ବଳ ଜାତିର ପ୍ରତିବାଦ କାନକୁ ବାଜି ନାହିଁ । କପିଟିର ଖାଣ୍ଡବ ଦହନ ପରି ଆଜି ଶୀତଳ ଯୁଦ୍ଧ, ଆଦର୍ଶବାଦ । ସ୍ୱାଧୀନ ଜଗତ (Free World), ଶାନ୍ତି ନାମରେ ଚାଲିଛି ଏକ ଦୀର୍ଘ ଦହନର କୁରୁକ୍ଷେତ୍ର ଲୀଳା । ଶତ ପ୍ରତିବାଦର ମର୍ମର କାହିଁ ହଜି ଯାଇଛି ।

ଯୁଦ୍ଧୋତ୍ତର ନ୍ୟୁରେମବର୍ଗର ବିଚାର କଥା ସ୍ମରଣକୁ ଆସୁଛି । ଜର୍ମାନୀର ପରାଜୟ ପରେ ପରାଜିତ ସେନାପତିମାନଙ୍କର ବିଚାର ବସିଥିଲା ଦୁନିଆର ଦାଣ୍ଡରେ । ତାଙ୍କ ବିରୋଧରେ ଅଭିଯୋଗ ଥିଲା —ସେମାନେ ଶାନ୍ତି ଓ ମାନବତାର ପରିପନ୍ଥୀ । ବିଚାର ଚାଲିଲା— ଯୁଦ୍ଧର କେତେ ଦୁର୍ଦ୍ଧର୍ଷ ସେନାପତି, କେତେ ପାରଗ ଧୁରନ୍ଧର ଲଢୁଆଳ ଅଭିଯୁକ୍ତ ହେଲେ । ଆଜି କ'ଣ ସେଇମିତି କହିହେବ ନାହିଁ ଯେ ବୋମା ବିସ୍ଫୋରଣ ଶାନ୍ତି ଓ ମାନବତାର ପରିପନ୍ଥୀ । ଆନ୍ତର୍ଜାତିକ ନିୟମର ବିରୋଧୀ ? ହୁଏତ ଏ କଥା କହିହେବ ନାହିଁ ହୁଏତ ଏ କଥା କହିଲେ ଠିକ୍ ହେବ ।

କିନ୍ତୁ ବୈଜ୍ଞାନିକର ସମସ୍ୟା କଅଣ ? ଆଗରୁ ସମସ୍ୟା ଉଠାଇଥିଲା ଧର୍ମ । ଧର୍ମର ମୁଖା ପିନ୍ଧି ଚାଲିଥିଲା କେତେ ଶୋଷଣ, ବିଗ୍ରହ ଆଉ ବିବାଦ । ଦର୍ଶନ ଧରିଥିଲା ପାଳି । ଭାବବାଦ, ବସ୍ତୁବାଦ

ଜୀବନ ବିଜ୍ଞାନର ନିୟମ ଅନୁସାରେ ଏହି ପରିବର୍ତ୍ତିତ ଜିନ୍ ଗୁଡ଼ିକ ମାନବ ଶରୀର ବିକାଶ ପକ୍ଷରେ କ୍ଷତିକାରକ। ଏହାର ସୁଦୂରପ୍ରସାରି ପରିଣତି ରହିଛି । ଆଜି ନୁହେଁ କାଲି ନୁହେଁ, ପୁରୁଷ ପୁରୁଷ ବାଦେ ମଧ୍ୟ ଏହାର କ୍ଷତିକାରୀ ଗୁଣ ପ୍ରକଟିତ ହୁଏ। ଏଗୁଡ଼ିକ ଅନ୍ତର୍ନିହିତ ଭାବେ କ୍ଷତିକାରକ। ପୁଣି ଉପସ୍ଥିତ ପରିସ୍ଥିତି କଥା ବିଚାରକୁ ଆଣିଲେ ଜଣାପାଏ ସେମିତି ତାହା ସେହି ଆଶୁ ପରିଣତିକୁ ମଧ୍ୟ ଅତି ଉତ୍କଟ ଭାବେ ଉପହାସ୍ୟ କରି ପକାଇଛି। ବିସ୍ଫୋରଣ ବେଳେ ଯେଉଁ ସବୁ ତେଜସ୍କ୍ରିୟ ବସ୍ତୁ ପ୍ରସ୍ତୁତ ହୁଏ, ତା ମଧ୍ୟରୁ ଷ୍ଟ୍ରନ୍ସିଅମ ୯୦ ଗୋଟିଏ। ଏହା ଫଳ, ଫୁଲ, ପତ୍ର, ଶସ୍ୟ, ଖାଦ୍ୟ ପଦାର୍ଥ ମଧ୍ୟ ଦେଇ ମଣିଷ ମଧ୍ୟରେ ପ୍ରବେଶ କରେ ଏବଂ କ୍ରମାଗତଭାବେ ମଣିଷର ହାଡ଼ ଓ ମଜ୍ଜାରେ ଜମାଟ ବାନ୍ଧୁଥାଏ। ଏହି ଷ୍ଟ୍ରନ୍ସିଅମହିଁ ବିଭିନ୍ନ ପ୍ରକାରର କ୍ୟାନ୍ସର ରୋଗ ସୃଷ୍ଟି କରିଏ। ବିସ୍ଫୋରଣ ସଙ୍ଗେ ସଙ୍ଗେ, କ୍ରମେ କ୍ରମେ ପୃଥିବୀରେ ମଣିଷ ଶରୀରରେ ଏଇ ଷ୍ଟ୍ରନ୍ସିଅମ ୯୦ର ପରିମାଣ ବଢ଼ି ବଢ଼ି ଯାଉଚି—ବଢ଼ି ବଢ଼ି ଯାଉଚି ଏଇ ଅନ୍ତର୍ନିହିତ ଭାବେ ରୋଗୀ ମାନବ ସଂଖ୍ୟାର ପରିମାଣ। ପ୍ରତିକାର ? ପ୍ରତିକାର ନାହିଁ। କଳଙ୍କହୀନ ବୋମା ଯେଉଁଥିରୁ ତେଜସ୍କ୍ରିୟ ରଶ୍ମି ନିର୍ଗତ ହେବ ନାହିଁ—ତାହା ଶୀତଳ ଯୁଦ୍ଧର ସ୍ୱକଳ୍ପିତ ବିଜ୍ଞାପନ। ବୋମା ବିସ୍ଫୋରଣଜନିତ ବିପଦରୁ ତ୍ରାଣ ନାହିଁ। ଖାଲି ଅଛି ଇଚ୍ଛା, ଆଶା, ଆକାଂକ୍ଷା, କାକୁତି, ମିନତି, ସାର୍ଦ୍ଧ ପ୍ରତୀକ୍ଷା, ଯାହା କରୁଛି।

ଆଜି ହୁଏତ ମାଇକ ରାଉଣ୍ଡରେ ଶୁଣାଯିବ ନିଜ ଅକ୍ଷ ଉପରେ ଘୁରୁଥିବା ପୃଥିବୀର ଆର୍ତ୍ତନାଦ। ଶୁଣାଯିବ ଜାପାନର କେଉଁଠିଙ୍କ କରୁଣ ଆତ୍ମକାହାଣୀ। ଶୁଣାଯିବ କେତେ ବିଗତ ଦିନର ଆତ୍ମ-

ଗଉରବପୂର୍ଣ୍ଣ ଇତିହାସ । ଅକ୍ଟୋବର ୧୯୫୧ । ନଭେମ୍ବର ୧୯୫୨ । ଅଗଷ୍ଟ ୨୦, ୧୯୫୩; ୧-୩-୧୯୫୪; ୨୬ ୩-୧୯୫୪; ନଭେମ୍ବର ୧୯୫୪; ନଭେମ୍ବର ୧୯୫୫; ଅପ୍ରେଲ ୧୯୫୬; ୩୧-୫-୧୯୫୬; ୧୬-୫-୧୯୫୭; ୩୧-୫-୧୯୫୭ । ଆମେରିକା, ରୁଷିଆ ଓ ଇଂଲଣ୍ଡର ବୋମା ବିସ୍ଫୋରଣର କେତେ ଗାରିମା ଗାଥାର କୁହୁକ କାହାଣୀ, କେତେ ନିଃସହାୟ ଲୋକଙ୍କର ଆର୍ତ୍ତନାଦ କ୍ଷୀଣ ହୋଇଯାଇଛି—କେତେ ଦୁର୍ବଳ ଜାତିର ପ୍ରତିବାଦ କାନକୁ ବାଜି ନାହିଁ । କଣ୍ଟିର ଖାଣ୍ଡବ ଦହନ ପରି ଆଜି ଶୀତଳ ଯୁଦ୍ଧ, ଆଦର୍ଶବାଦ । ସ୍ୱାଧୀନ ଜଗତ (Free World), ଶାନ୍ତି ନାମରେ ଚାଲିଛି ଏକ ବିଶ୍ୱ ଦହନର କୁରୁକ୍ଷେତ୍ର ଲୀଳା । ଶତ ପ୍ରତିବାଦରୁ ମର୍ମର କାହିଁ ହଜି ଯାଇଛି ।

ଯୁଦ୍ଧୋତ୍ତର ନ୍ୟୁରେମବର୍ଗର ବିଚାର କଥା ସ୍ମରଣକୁ ଆସୁଛି । ଜର୍ମାନୀର ପରାଜୟ ପରେ ପରାଜିତ ସେନାପତିମାନଙ୍କର ବିଚାର ବସିଥିଲା ଦୁନିଆର ଦାଣ୍ଡରେ । ତାଙ୍କ ବିରୋଧରେ ଅଭିଯୋଗ ଥିଲା —ସେମାନେ ଶାନ୍ତି ଓ ମାନବତାର ପରିପନ୍ଥୀ । ବିଚାର ଚାଲିଲା— ଯୁଦ୍ଧର କେତେ ଦୁର୍ଦ୍ଧର୍ଷ ସେନାପତି, କେତେ ପାରଗ ଧୁରନ୍ଧର ଲଢ଼ୁଆଳ ଅଭିଯୁକ୍ତ ହେଲେ । ଆଜି କ'ଣ ସେଇମିତି କହିହେବ ନାହିଁ ଯେ ବୋମା ବିସ୍ଫୋରଣ ଶାନ୍ତି ଓ ମାନବତାର ପରିପନ୍ଥୀ । ଆନ୍ତର୍ଜାତିକ ନିୟମର ବିରୋଧୀ ? ହୁଏତ ଏ କଥା କହିହେବ ନାହିଁ ହୁଏତ ଏ କଥା କହିଲେ ଠିକ୍ ହେବ ।

କିନ୍ତୁ ବୈଜ୍ଞାନିକର ସମସ୍ୟା କଅଣ ? ଆଗରୁ ସମସ୍ୟା ଉଠାଇଥିଲା ଧର୍ମ । ଧର୍ମର ମୁଖା ପିନ୍ଧି ଚାଲିଥିଲା କେତେ ଶୋଷଣ, ବିଗ୍ରହ ଆଉ ବିବାଦ । ଦର୍ଶନ ଧରିଥିଲା ପାଳି । ଭାବବାଦ, ବସ୍ତୁବାଦ

ଦର୍ଶନ ନାମରେ ଯୁଗ ଯୁଗ ଗୁଲଥିଲା କେତେ ବିତଣ୍ଡା, ତର୍କ, ଯୁକ୍ତି ଆଉ କଳହ । ଇଆର ଯାଜକମାନେ ନିୟନ୍ତ୍ରଣ କରୁଥିଲେ ନିତି-ଦିନିଆ ଜୀବନର ଧାରାକୁ ବହୁଦିନ ଧରି । କିନ୍ତୁ ଏଥର ଧର୍ମ ନୁହେଁ—ଦର୍ଶନ ବି ନୁହେଁ, ବିଜ୍ଞାନ ଉଠାଇଲା ସମସ୍ୟା । ସୃଷ୍ଟି କି ଘଟେ ଲୟ ସୃଷ୍ଟି କରିପାରେ ତା'ର ପ୍ରତୀକରୂପେ ବିଜ୍ଞାନ ଉଠାଇଲା ସମସ୍ୟା । ବୈଜ୍ଞାନିକ ଏଇ ନୂଆ ସମସ୍ୟାର ଯାଜକ ।

ବିଜ୍ଞାନ ଆଜି କଳୁଷିତ ହୋଇଛି, ପଙ୍କିଳ ବି ହୋଇଛି । ଦୋଷାଦୋଷ ବାଛିବା ଲାଭ ନାହିଁ । ଅଠାଅଶୀ ନରକର ଦ୍ୱାର ମଣିଷ ଆଗରେ ଖୋଲି ଦେଇଛି ବିଜ୍ଞାନ । ବିଜ୍ଞାନ ଆଜି ସତେ ଯେମିତି ଯମୁନା କୂଳର ରାଧା—ତା'ର ଅପବାଦ ନାଗରୀ ଗୁରିଆଡ଼େ ଉଡ଼ି-ଉଡ଼ି ବାଜୁଛି । ଜନବୁନିଆନଙ୍କ ପିଲଗ୍ରିମସ୍ ପ୍ରଗ୍ରେସର ନାୟକ ଖ୍ରୀଷ୍ଟିଆନ ପରି ବିଜ୍ଞାନୀ ଆଜି ପଳାୟନପନ୍ଥୀ । ଧାଇଁଛି, କୁଆଡ଼କୁ ଜଣା ନାହିଁ—ବିଶ୍ୱକୁ ଆଶୁଧ୍ୱଂସର ମୁହାଣରୁ ବଞ୍ଚାଇ ପାରିବ କି ନାହିଁ ସ୍ଥିରତା ନାହିଁ । ଧାଇଁଛି—ଖାଲି ଧାଇଁଛି ।

ଦିନେ ବିଜ୍ଞାନୀ ଗବେଷଣା ମନ୍ଦିର ପରିସରରେ ଆବଦ୍ଧ ଥାଇ ପ୍ରକୃତିର ଗୂଢ଼ ରହସ୍ୟ ଉଦ୍‌ଘାଟନ କରିବାର ବିଳାସରେ ରତ ଥିଲା । ପ୍ରକୃତିର ମରମୀ ରହସ୍ୟ ଉଦ୍‌ଘାଟନ ସତେ ଯେପରି ଥିଲା ତା'ର ଏକ ରମ୍ୟବାଗ୍ର କଳ୍ପନାର ଅଟ୍ଟାଳିକା । କିନ୍ତୁ ସେହି ସରହଦର ବାହାରକୁ ଆସି ଆଜି ସେ ଦେଖୁଛି ଯେ ପ୍ରକୃତିର କ୍ଷୀର ସିନ୍ଧୁ ମନ୍ଥନରୁ ସେ ବିଷ ଓ ଅମୃତ ଉଭୟକୁ ପାଇଛି । ଅମୃତ ବଣ୍ଟା ହେବା ପାଇଁ ମୋହିନୀ ମୂରତିର ଆବିର୍ଭାବ ତ ହୋଇ ନାହିଁ—ବିଷର ଜ୍ୱାଳାକୁ ସମ୍ଭାଳିବା ପାଇଁ ନୀଳକଣ୍ଠର ଆବିର୍ଭାବ ବି ସମ୍ଭବ ନାହିଁ ଆଜିଯାଏ ।

ବିଜ୍ଞାନ ଆଜି ନେଉଛି ନୀଳକଣ୍ଠ ଶିବ ବା ମଙ୍ଗଳମୟ, ଯେ ବିଷକୁ ଶୋଷିବ ଏବଂ ଭସ୍ମାସୁରକୁ ଭୁଲ ବର ଦେବ ନାହିଁ । ବିଶ୍ୱରୂପକୁ କାଳନ୍ଦୀ ପୋଖରୀରେ ପରମାଣୁ ରୂପକ କାଳୀୟର ଦଳନ ପାଇଁ ଲୋଡ଼ା ଏକ କୃଷ୍ଣ ଯେ କି କାଳୀୟର ବଦନ ଉପରେ ଶାନ୍ତି ପ୍ରଗତିର ମୁରଲୀ ଫୁଙ୍କି ଶାନ୍ତି-ଆର୍ତ୍ତ ଶତ ମାନବ ଗୋଷ୍ଠୀକୁ ମୋହି ପାରିବ । ତା’ର ନାମ ଅନ୍ତର୍ଦୃଷ୍ଟି । ତା’ର ନାମ ସଂଯମ । ତା’ର ନାମ ମାନବିକତା ।

# ଆଶାବାଦ ନା ନୈରାଶ୍ୟବାଦ

ଏଚ. ଜି. ୱେଲ୍‌ସ ବିଜ୍ଞାନର ରଙ୍ଗୀନ ଚିଠିକୁ ହାତରେ ଧରି ଉଚ୍ଛୃଙ୍ଖଳ ହୋଇ ଧାଇଁ ଯାଇଥିଲେ ଜହ୍ନମାମୁଁର ରାଇଜକୁ— ପ୍ରଥମ କୁଣିଆ ହୋଇ (The first men on the moon) ଯାଇଥିଲେ ସମୟର ଯନ୍ତ୍ରରେ (The time machine) ଅତୀତର ତନ୍ଦ୍ରା ବିଜଡ଼ିତ ମୂଳକକୁ, ଭବିଷ୍ୟତର ଲକ୍ଷ୍ୟ ଆଶାର ପୀଠକୁ। ଅଦୃଶ୍ୟ ମାନବ (Invisible man) ହୋଇ କିଛି ମରୁତବ୍ୟୋମ ବିହାର କରି ବୁଲିଥିଲେ ମଙ୍ଗୁଆଲ ହୋଇ। କୁତୂହଳୀ ହୋଇ ସେ ଲେଖିଥିଲେ ରେଡ଼ିଓ ଜୀବାଣୁର ଗପ, ହୀରାର ବଣିଆର ଆତ୍ମକଥା, ଦୂର ନଗରର ରାଜମିସ୍ତ୍ରୀର କାହାଣୀ। ବିଦ୍ୟୁତଶକ୍ତି ଯାହାର କଟୁଆଳ, ରଞ୍ଜନ ରଶ୍ମି ଯାହାର ସେନାପତି, ଶିଳ୍ପର ଅସରନ୍ତି ପ୍ରୟୋଗ ଯାହାର ମନ୍ତ୍ରୀ— ଏପରି ଯେଉଁ ବିଜ୍ଞାନ, ସେଇ ବିଜ୍ଞାନକୁ ସେ 'ଗୋବର୍ଦ୍ଧନ ଗିରି'ରୂପେ ପୂଜା ନୈବେଦ୍ୟଂ ବାଢ଼ିଥିଲେ। ବିଜ୍ଞାନର ଦର୍ପଣରେ ସେ ଦେଖିଥିଲେ ତିନିକାଳର ଘଟଣା। ନିଜର ପରିକଳ୍ପିତ ଗୋଟିଏ ସବୁଜାଣ ବିଜ୍ଞାନର ମନପବନ କଠଉରେ ବସି କଳ୍ପନାର ଉଡ଼ନ୍ତା ବଳରେ ସେ ବରୁଣ, ବାସୁକି, ଅଗ୍ନି, ବାୟୁ, କୁବେର, ଇନ୍ଦ୍ର, ସବୁରି ରାଇଜରେ ବୁଲି ବୁଲି ଆସିଥିଲେ। ପୃଥିବୀର ସ୍ମରଣ ଭୂଇଁରେ ଭାଟ ହୋଇ ଗାଇଥିଲେ ବିଜ୍ଞାନର ପ୍ରଶସ୍ତି। ବିଜ୍ଞାନ ଥିଲା ଲୋଭମୟ, ରହସ୍ୟମୟ ଆଉ ଈପ୍‌ସିତ ଅପସରା ନାୟିକା।

ବିଜ୍ଞାନ ଥିଲା ଆଶାର ନିଳୟ, ଅଶେଷ ସମ୍ଭାବନାର ଆଧାର, ପ୍ରଗତିର ଧ୍ରୁବଜାତି । ସେଦିନ ଗାଣିତିକ ଲାପଲେସ ଅତି ଦମ୍ଭରେ କହିଥିଲେ — ମତେ ପୃଥିବୀ ବିଷୟକ ଯେତେକ ଜାଣିବାର ଚଜ ଅଛି, ତା'ର ବିବରଣୀ ଦେଇଦିଅ, ମୁଁ ଗଣିତ ସାହାଯ୍ୟରେ ଅଶେଷ କାଳ ପାଇଁ ଆଗାମୀ ଯୁଗର ସକଳ ବିବରଣୀ ଭବିଷ୍ୟତ ବାଣୀ କହିଯିବି । ମୁଁ ଈଶ୍ୱରଙ୍କୁ ଭଲ ରୂପେ ଜାଣେ । ସେ ଜଣେ ବିଶାରଦ ଗଣିତଜ୍ଞ ମାତ୍ର ।

ଏ କାଳରେ ଭବିଷ୍ୟତ ପାଇଁ ବଳ ଥିଲା, ନିର୍ଭର ଥିଲା, ଅବଲମ୍ବନ ବି ଥିଲା । ଭବିଷ୍ୟତ ଥିଲା ଏକ ସୁବର୍ଣ୍ଣ ଯୁଗର ସ୍ମାରକ । ବୈଜ୍ଞାନିକ ରମ୍ୟବାଦ(scientific romanticism) ଥିଲା ଏ ଯୁଗର ଧର୍ମ । ଆଉ ଆଶାବାଦ ଥିଲା ଏ ଯୁଗର ମୋକ୍ଷ ।

ଦେଖିବାକୁ ଗଲେ ଏ ଆଶାବାଦ ମୂଳରେ ବହୁ ଦମ୍ଭ ଯୁକ୍ତି ବି ରହିଥିଲା; କିନ୍ତୁ ବିଂଶ ଶତାବ୍ଦୀର ପ୍ରାରମ୍ଭକୁ ଏହି ଆଶାବାଦକୁ ଆଉ ଧରି ରଖି ହେଲା ନାହିଁ । ଏ କାଳର ବହୁ ଆବିଷ୍କାର ତ ପ୍ରାକ୍‌ବିଂଶ ଶତାବ୍ଦୀ ବିଜ୍ଞାନର ନିଅଁ ଦୋହଲାଇ ଦେଇଥିଲା । ତା ଛଡ଼ା ଏ କାଳରେ ବିଜ୍ଞାନର ପ୍ରୟୋଗ ପନ୍ଥାରେ ବହୁ ତାରତମ୍ୟ, ମୂଢ଼ତା ଓ ଚମତ୍କାରିତା ଦେଖାଦେଲା । ବିଜ୍ଞାନହିଁ ଶୋଷଣର ଆୟୁଧ ରୂପେ ଛିଡ଼ା ହେଲା ପ୍ରଥମ କରି । ବିଜ୍ଞାନ କୋଡ଼ିଥିଲା ବହୁତ କିନ୍ତୁ ଏ କାଳରେ ମାଡ଼ିଲା ବି ବହୁତ ।

ଏଇ ଶୋଷଣର ମୂଳରେ ଗୋଟିଏ କଥା ମାତ୍ର ରହିଛି । ଶିଳ୍ପ ବିପ୍ଳବ, ଉତ୍ପାଦନ ବଣ୍ଟନ ଓ ପ୍ରୟୋଗ ପନ୍ଥାରେ ଯେଉଁ ଯାନ୍ତ୍ରିକର ପରିବର୍ତ୍ତନ ଆଣିଲା ତାରି ମଧ୍ୟରେହିଁ ଏହାର ବୀଜ ନିହିତ ଅଛି । ବିଜ୍ଞାନ ପ୍ରଥମେ ଉତ୍ପାଦନ ପ୍ରଣାଳୀର ମୂଳ ଖୁଣ୍ଟ ବଦଳାଇ ଦେଲା । ଆଗେ ଉତ୍ପାଦନ ଥିଲା ବ୍ୟଷ୍ଟି ହାତରେ । କିନ୍ତୁ ବିଜ୍ଞାନର ପ୍ରୟୋଗ ଫଳରେ ଉତ୍ପାଦନ ଆସିଲା ଗୋଷ୍ଠୀ ବା ସମଷ୍ଟି ହାତକୁ ।

ଉତ୍ପାଦନ ପ୍ରଣାଳୀର ବିକେନ୍ଦ୍ରୀକରଣ ହେଲା ତନ୍ନ ତନ୍ନ କରି, କିନ୍ତୁ ତା ସଙ୍ଗେ ସଙ୍ଗେ ବଣ୍ଟନ ପ୍ରଣାଳୀ କାହିଁ ଗଲା ସମଷ୍ଟିର ହାତକୁ ? ନା—ବଣ୍ଟନପ୍ରଣାଳୀ ରହିଲା ବ୍ୟଷ୍ଟି ବା ବ୍ୟକ୍ତିର ହାତରେ । ବଣ୍ଟନ ପ୍ରଣାଳୀର କେନ୍ଦ୍ରୀକରଣ ହେବାକୁ ଲାଗିଲା ଆସ୍ତେ ଆସ୍ତେ । ତା ଫଳରେ ଉପୁଜିଲା ଯୋଗ୍ରତିକ ଅବ୍ୟବସ୍ଥା, ଆଉ ଶୋଷଣ; ବିଜ୍ଞାନ କଳୁଷିତ ହେଲା ଖାଲି ।

ଏଇ କେନ୍ଦ୍ରୀଭୂତ ବିଜ୍ଞାନହିଁ ଗଣଶୋଷଣର ମାଧ୍ୟମରୂପେ ଆସିଲା । ଶୋଷଣ ଆସିଲା ଶନୈଃ ଶନୈଃ କଇଁଛର ଗତିରେ । କିନ୍ତୁ ପରୋକ୍ଷ ଶୋଷଣ ଆସିଲା—ବିଜ୍ଞାନ ବିଜୁଳିବଣ୍ଣ ଦେଖାଇ ଗଣକୁ ଚମକାଇ ଦେଇଥିଲା; କିନ୍ତୁ ଏ ଶୋଷଣର କ୍ରିୟା ହଠାତ୍ ଅନୁଭବ କରି ହେଲା ନାହିଁ । ଯେମିତି ବସେ ପରୋକ୍ଷ ଟିକସ । ଯଥା—ଲଫାପା ଅବା ପୋଷ୍ଟ କାର୍ଡ଼ର ଦାମ ବଢ଼ିଗଲା ପରେ—ମଣିଷ ଅଧିକ ପଇସା ଦିଏ ଅଥଚ ଅନୁଭବ କରିପାରେ ନାହିଁ—ସେଇମିତି ଏଇ ପରୋକ୍ଷ ଶୋଷଣର କ୍ରିୟା ଶୋଷେ ଅଥଚ ଜାଣି ହୁଏ ନାହିଁ । ଯେମିତି ଧୀର ପାଣି ପଥରକୁ କାଟେ ଅଥଚ ଜାଣି ହୁଏ ନାହିଁ ।

ଏଇ ବ୍ୟକ୍ତି ଅନୁଗତ ପଙ୍କିଳ ଦୂଷିତ ବିଜ୍ଞାନର ଛବି ଅଧ୍ୟାପକ ଗୋକୁଳାନନ୍ଦ ମହାପାତ୍ରଙ୍କ "ଉଡନ୍ତା ଥାଳିଆ" ପୁସ୍ତକରେ ରହିଛି । ଗବେଷକ ଏକ ରୁଦ୍ଧ ଜିଜ୍ଞାସା ପଛରେ ଧାଇଁ ଧାଇଁ ଗବେଷଣା କରେ । ନିଜର ଅବସ୍ଥାକୁ ଅନାଏ ନାହିଁ, ପ୍ରାଣପ୍ରିୟା ଭାରିଯାକୁ ଲୁଚେଇନାହିଁ । କିନ୍ତୁ ତାର ଗବେଷଣା ଲବ୍ଧଜ୍ଞାନରୁ ମୁନାଫା ଉଠାଏ କାରଖାନାବାଲା ପୁଞ୍ଜିପତି । ପ୍ରକୃତିର ରହସ୍ୟ ବିଜ୍ଞାନ-କର୍ମୀର ଆଖିରେ ପରଳ ଲଗାଇ ଦିଏ; ଲଗାଏ କମିଆ । ରହସ୍ୟ ଉଦ୍‌ଘାଟନ ନିମିତ୍ତ ସେ ଆଖିରେ ଜାଗର ଜାଳେ; ପୃଥିବୀକୁ ବହୁ ଉଦ୍ଭାବନ ଆବିଷ୍କାର ଦ୍ୱାରା ଉନ୍ନତ କରେ; ସମୃଦ୍ଧ କରେ । କିନ୍ତୁ ଉଦ୍ଭାବନରୁ ମିଳେ ଯେଉଁ ଉପକାର ତାକୁ ସେ

ପାଇପାରେ ନାହିଁ । ଯେ କାରଖାନା ଚଳାଏ, ଯେ ଗବେଷଣା ମନ୍ଦିରକୁ ପୃଷ୍ଠପୋଷକତା କରେ । ସେ ତା'ର ଉପକାର ଝାମ୍ପି ନିଏ । ବିଜ୍ଞାନୀ ସତେ ଯେମିତି କସ୍ତୁରୀ ମୃଗଟିଏ ନିଜ ଉଦ୍ଭାବନ ଆବିଷ୍କାର ସମ୍ଭୂତ ଲାଭ ପଛରେ ଧାଇଁ ଧାଇଁ ବୁଲିବ, ଅଥଚ ପାଇବ ନାହିଁ । ବିଜ୍ଞାନର କର୍ମୀ ସତେ ଯେପରି ଗୋଟିଏ ନିସ୍ପୃହ ଧୀବର; ମାଛ ଧରିବ ; କିନ୍ତୁ ଖାଇ ପାରିବ ନାହିଁ ଜମାରୁ ।

କିନ୍ତୁ ଆଜି ଏହି ବୀଭତ୍ସ ଅନ୍ତର ବିଜ୍ଞାନଠାରୁ ବ୍ୟକ୍ତି ଅନୁଷ୍ଠାନ ଅନୁଗତ ବିଜ୍ଞାନ ଅତିରି ଭୟଙ୍କରଭାବେ ବିପଥଗାମୀ ହୋଇ ଯାଇଛି । ସେକ୍‌ସପିଅରଙ୍କ ମିରାଣ୍ଡା ନିର୍ଜନ ଦ୍ୱୀପରେ ଫର୍ଡିନାଣ୍ଡକୁ ଦେଖି ଚିତ୍କାର କରି ଉଠିଥିଲା—Oh Brave New World!— ସେଇ ସାହସୀ ନୂତନ ପୃଥିବୀକୁ ଧନ୍ୟ କହିବା—ଯେଉଁଠି ଏପରି ସୁନ୍ଦର ମାନବମାନେ ଅଛନ୍ତି । ମିରାଣ୍ଡାର ଚକ୍ଷୁରେ ପୃଥିବୀ ଗୋଟିଏ କମନୀୟ, ରମଣୀୟ ସ୍ଥାନରୂପେ ଉଦ୍ଭାସିତ ହୋଇ ଉଠିଥିଲା । କିନ୍ତୁ ହକ୍‌ସଲେ ସେହି ନୂତନ ସାହସୀ ପୃଥିବୀକୁ ଅନାଇ କ'ଣ ଦେଖିଲେ ? ତାଙ୍କର ସମସ୍ତ ଜ୍ଞାନଗରିମା ସତ୍ତ୍ୱେ ସେ ପୃଥିବୀକୁ ନିର୍ମଳ, ଉଜ୍ଜ୍ୱଳ ଓ ସୁନ୍ଦର ରୂପରେ ଦେଖି ପାରିଲେ ନାହିଁ । ବିଜ୍ଞାନ ଅଗ୍ରଗତିର ଚରମ ଅବସ୍ଥାରେ ସେ ଆବିଷ୍କାର କଲେ କେବଳ ଶୃଙ୍ଖଳିତ ସ୍ୱାଧୀନତା, ଆଗ୍ରହଯୁକ୍ତ ଦାସତ୍ୱ, ବୈଚିତ୍ର୍ୟହୀନ ନିରବଚ୍ଛିନ୍ନ ଆନନ୍ଦ ଆଉ ଏକ ସ୍ଥଗିତ ସମାଜର ପରିଣତିର ଚିତ୍ର ।

Beave New World ପୁସ୍ତକରେ ଏଇପରି ଗୋଟିଏ ଚିତ୍ର ରହିଛି । ପିମ୍ପୁଡ଼ିର ସମାଜ ଅତି କଠୋରଭାବେ ସୁଗ୍ରଥିତ ହୋଇ ଯାଇଛି । ଅତି ନିଷ୍ଠୁର ନିଦାରୁଣ ସେଇ ଜାତି ବିଭାଗର ଦୁଆ ଉପରେ ଠିଆ ହୋଇଛି ସମାଜର ମେରୁଦଣ୍ଡ । ଏଠି ସମସ୍ତେ ଯେଝା,

ଯେତ୍କା କାମ କରପା'ନ୍ତ । କେବଳ ପ୍ରଶ୍ନ ପର୍ଯ୍ୟରେ ନାହିଁ । ଏ ଜାତିର ନାମ ଆଲଫା, ବିଟା, ଗାମା, ଡେଲଟା ପ୍ରଭୃତି । ଯୁଦ୍ଧ ଭୂଇଁର ସୈନିକ ଭଳି ସବୁ ଜାତି କେବଳ କାମ କରିଯାଏ । କାମର ଯଥାର୍ଥତା, କଠୋରତା ବିଷୟରେ ପ୍ରଶ୍ନ କରିବାକୁ କାହାର ମୁଣ୍ଡକୁ ଚିନ୍ତା ଆସି ପାରେ ନାହିଁ । ବିଜ୍ଞାନ ଏଇ ଶକ୍ତିଟିକୁ ମୁଣ୍ଡରୁ କାଢ଼ି ନେଇଛି ସବୁ ଦିନ ପାଇଁ । ସମାଜ ଏଠି ଅନନ୍ତକାଳ ପାଇଁ ସ୍ଥିର ଓ ସ୍ଥଗିତ ।

ଲୋକମାନେ ସୁଖରେ ଥାଆନ୍ତି ନିଶ୍ଚୟ । କିନ୍ତୁ କି ଉତ୍କଟ ଓ ଭୟଙ୍କର ସେଇ ସୁଖର ଚେହେରା । ସେମାନେ ଯାହା ଚାହାନ୍ତି ତା ପାଆନ୍ତି ଏବଂ ଯାହା ପାଇ ପାରିବେ ନାହିଁ ତା' କେବେହେଲେ ଚାହାନ୍ତି ନାହିଁ । ଏଇ ଅପ୍ରାପ୍ୟକୁ ଚାହିଁବାର ଶକ୍ତି ବିଜ୍ଞାନ ଏ ସମାଜରେ ମାନବଠୁ କାଢ଼ି ନେଇଛି ଚିରଦିନ ପାଇଁ । ଏଠି ରୋଗ ନାହିଁ, ମୃତ୍ୟୁ ଭୟ ନାହିଁ, ମାତାପିତା ନାହିଁ, ସ୍ତ୍ରୀ ପିଲା ପ୍ରଶ୍ନ ନାହିଁ, ସ୍ଥୂଳତଃ ଜୀବନରେ ବୈଚିତ୍ର୍ୟ ନାହିଁ, ନୂତନତା ନାହିଁ, ପରିବର୍ତ୍ତନ ନାହିଁ । ଉଚ୍ଚସ୍ତର କଳା ଏଠି ଜୀବନରୁ କାହିଁ ହଜି ଯାଇଛି ।

ଏ ସମାଜରେ ଈଶ୍ୱରଙ୍କ ଚିରନିର୍ବାସନ ଦଣ୍ଡ । ଚିରଯୌବନ ଓ ଚିର ଭୋଗ ବିଳାସ ଏଠି ବିରାଜିତ କରୁଛି । ଈଶ୍ୱରଙ୍କୁ ଭଜିବାର ଅବକାଶ କାହିଁ ? ଏଇ ସମାଜର ପଞ୍ଚବଟୀ କୁଡ଼ିଆ ଆଗରେ ପଡ଼ିଛି ତିନିଗାର— ଗୋଷ୍ଠୀପ୍ରାଣତା, ସାମ୍ୟ ଆଉ ସ୍ଥାଣୁତା । ଏହି ତିନି ନିୟମର ଧରମ ଗୁଳା ଉପରେ ଏ ସମାଜର ରଥଚକ୍ର ଗଡ଼ି ଗଡ଼ି ଚାଲେ । ଏଠି ମାନବର ଇଚ୍ଛା, ଅନୁଭବନା, ସମ୍ବେଦନା, ପ୍ରବଣତା, ସ୍ୱାଧୀନତା, ସବୁ ମିଥ୍ୟା, ସବୁ ଅଳୀକ, ସବୁ ପ୍ରହେଳିକା ମାତ୍ର ।

ଜର୍ଜ ଅରୱେଲ୍ ଏଇ ଅନୁଷ୍ଠାନ ଅନୁଗତ ବିଜ୍ଞାନର ଆଉ ଗୋଟିଏ ଦିଗ ଦର୍ଶାଇ ଦେଲେ । ଏକ ନିପୁଣ କୁଶଳୀ କଳାକାରର କରସଞ୍ଚାଳନ ଦ୍ୱାରା ପଥହରା ବିଜ୍ଞାନ ଗୋଟିଏ ଅପୂର୍ବ ସୌଷ୍ଠବର

ଗ୍ରୁଅରେ ଗଢ଼ା ହୋଇ ଠିଆ ହେଲା ମଣିଷର ଚେତନା ସମକ୍ଷରେ । ଦ୍ୱିତୀୟ ମହାଯୁଦ୍ଧ ଗଲା । ସମୁଦାୟ ମାନବ ସମାଜରେ ଆଣିଲା ଗୋଟାଏ ଭ୍ରାନ୍ତି କ୍ଲାନ୍ତି ଆଉ ଅବସାଦ । ଯୁଦ୍ଧରେ ବର୍ଷିକାର ସଂଜ୍ଞା ବେ'ଳ କଛି ଉହ୍ୱଳ ନାହିଁ । ଜୀବନ ? କ'ଣ ଏଇ ଜୀବନ ? ଖାଲି ବିରହ, ବିଚ୍ଛେଦ, ଯନ୍ତ୍ରଣା, ଆର୍ତ୍ତନାଦ, କଷ୍ଟର ଗୋଟିଏ ବୃହତ୍ତ ମିଶାଣ ମାତ୍ର । ମୃତ୍ୟୁର ଅପର ନାମ ଜୀବନ । ଅରୱେଲ୍ ଅନୁମାନ କଲେ— ୧୯୮୪ ମସିହାରେ ମାନବ ସମାଜର ଅବସ୍ଥା କ'ଣ ହୋଇଥିବ ? କ'ଣ ?

୧୯୮୪ ବେଳକୁ ବିଜ୍ଞାନର ଅଗ୍ରଗତି ଚୂଡ଼ା ଛୁଇଁଥିବ । ନବମ ମହାଯୁଦ୍ଧ ପରେ ପୃଥିବୀ ସବୁକାଳ ପାଇଁ ତିନି ଖଣ୍ଡରେ ବିଭକ୍ତ ହୋଇ ଯାଇଥିବ । ରାଜନୀତି ବିଜ୍ଞାନର ଅସ୍ତ୍ର ଧରି ମାନବ ଜୀବନକୁ ନିୟନ୍ତ୍ରଣ କରୁଥିବ ତିଳ ତିଳ କରି । ଏଠି ବ୍ୟକ୍ତିଗତ ଗୋପନୀୟତା କିଛି ନ ଥିବ । "ପାର୍ଟି"ର ଶୃଙ୍ଖଳଖିନକୁ ଜୀବନର ପ୍ରତି ସ୍ତର, ପ୍ରତି ଭଙ୍ଗ, ପ୍ରତି ଛନ୍ଦ ଧରିଥିବ । ଏଠି ଅଜ୍ଞାନତା ହିଁ ବଳର ସ୍ମାରକ, ଅଭାବ ହିଁ ପ୍ରାଚୁର୍ଯ୍ୟର ସଙ୍କେତ, ମିଥ୍ୟା ହିଁ ସତ୍ୟର ନବ କଳେବର । ଏଠି ଦୁଇରେ ଦୁଇ ମିଶାଇଲେ ପାଞ୍ଚ ହୁଏ । "ପାର୍ଟି"ର ବିଜ୍ଞାପନ ହିଁ ବ୍ରହ୍ମାର ବେଦବାକ୍ୟ ।

ପ୍ରତିବାଦ ? ଏଠି ପ୍ରତିବାଦ ନାହିଁ । ଭାଷା ଅତି ସୀମାବଦ୍ଧ । ଭାବିବାର ପରିସର ଖୁବ୍ କମ । ପ୍ରତିବାଦ ଏଠି ଯୁକ୍ତି ଦୃଷ୍ଟିରୁ ମଧ୍ୟ ସମ୍ଭବ ନୁହେଁ । ପାର୍ଟି ସବୁରି ମନକୁ ନିୟନ୍ତ୍ରିତ କରେ । ସବୁ ଲେଖାପଢ଼ା, ସବୁ ଦଲିଲ୍, ଦସ୍ତାବିଜ, ସବୁ ପାଣ୍ଡୁଲିପି ଖତିଆନ । ସବୁ ପ୍ରମାଣ ? "ପାର୍ଟି" ବିରୁଦ୍ଧରେ ପ୍ରମାଣ ସମ୍ଭବ ବି ନୁହେଁ; 'ଚିନ୍ତା'ର ସାଇଜରେ ବି ନୁହେଁ ।

କିନ୍ତୁ ସତରେ କ'ଣ ବିଜ୍ଞାନ ଏତେ ଅବାଟକୁ ଚାଲିଯାଇଛି ଆଜି, ସତରେ କ'ଣ ହକ୍‌ସଲେ ଆଉ ଅରୱେଲଙ୍କ ଉଦ୍ଭଟ କଳ୍ପନା ଆଜି ରୂପ ପରିଗ୍ରହ କରି ମାନବ ସମାଜକୁ ଉପହାସ କରୁଛି। ସତରେ କଣ ସମସ୍ୟା ଜାଗିଛି ଆଜି ବୈଜ୍ଞାନିକର ଦପ୍ତରରେ ?

ବିଚରା ବୈଜ୍ଞାନିକ ଆଜି କେଉଁ ବିରାଟ ହର୍ମ୍ୟ ମଧ୍ୟରେ ଗବେଷଣାରତ ସତ; କିନ୍ତୁ ତା'ର ଚାରିପାଖରେ ଉଦ୍ଧତ ରାଜନୀତିର ନାଗଫାଶ ବନ୍ଧନ। ଶୀତଳ ଯୁଦ୍ଧ ଗବେଷଣାର ଦିଗ ନିର୍ଣ୍ଣାୟକ
ଅନୁଷ୍ଠାନ ବିଶେଷ ହୋଇଛି
ହୋଇଛି। ବୈଜ୍ଞାନିକର କର୍ଣ୍ଣଧାର। ଏକ ଅସହାୟ ନିରାଶାବାଦ ଘେରିଛି ବିଜ୍ଞାନ ଜଗତକୁ ତଥା ସମଗ୍ର ମାନବ ଜାତିକୁ।

ତା'ହେଲେ ବୈଜ୍ଞାନିକର ସମସ୍ୟା କେଉଁଠି ? ଏ କଥା କ'ଣ ଅସ୍ୱୀକାର କରି ହେବ, ଯେ ସକଳ ସମ୍ଭାରକୁ ଲୋକଲୋଚନର ଗୋଚରରେ ଥୋଇଛି, ଯେ ଦୁନିଆକୁ ବୈଚିତ୍ର୍ୟ ଓ ସମ୍ଭୋଗରେ ଭରି ଦେଇଛି, ଦେଖାଇଛି ଜୀବନର ମାଧୁରୀ ଆଉ ମାଦକତା ସମୁଦାୟ ମାନବ ଜାତିକୁ ପ୍ରଭାବିତ କରୁଥିବା ସିଦ୍ଧାନ୍ତଗୁଡ଼ିକ ମଧ୍ୟରେ ତାର ସ୍ଥାନ ନାହିଁ ବୋଲି ? ବ୍ରହ୍ମା ସୃଷ୍ଟି ଗଢ଼ିବେ ଅଥଚ ପୂଜା ପାଇବେ ନାହିଁ। ହୁଏତ ବୈଦେଶିକ ବିଭାଗର ଦପ୍ତରରୁ ବୁଲେଟିନ ପ୍ରକାଶ କଲାବେଳେ ଏ କଥା ଅନୁଭବ କରି ହେବନାହିଁ। କିନ୍ତୁ ଏହା ଯେ ସତ୍ୟପାଠ ଏହାକୁ ଗଭୀର ଭାବେ ହୃଦୟଙ୍ଗମ କରିବାକୁ ହେବ।

ଆଜି ହୃଦୟଙ୍ଗମ କରିବାକୁ ହେବ, ସେଇ ଭାବନାର ସୂକ୍ଷ୍ମ ତନ୍ତ୍ରୀକୁ ଯାହା ମୃତ୍ୟୁ-ଶଯ୍ୟାରେ ମନୀଷୀ ଆଇନଷ୍ଟାଇନଙ୍କୁ ଗଭୀର ଭାବେ ଆଲୋଡ଼ିତ କରିଥିଲା। ଅନୁଭବ କରିବାକୁ ହେବ ସେଇ ସମ୍ବେଦନା, ସେଇ ଆଶୁ ନିରାଶାବାଦର ରାଗିଣୀ ଯାହାର ସୂଚନା

ହକସଲେଙ୍କ ଇସ୍ତାହାର ଆଉ ଅରୱେଲଙ୍କ ବ୍ୟଙ୍ଗ ଉକ୍ତି ମଧ୍ୟରେ ଲୁଚିରହିଛି ସମଗ୍ର ମାନବ ଜାତିକୁ ଆଖି ଡାଳକୁଚି । ଉପାୟ ? ସମାଧାନ ?

ହକ୍ସଲେ ଓ ଅରୱେଲ ପ୍ରଥମେ ପ୍ରମାଣ କଲେ ଯେ, ୱେଲସ ଯେଉଁ ଇଙ୍ଗିନ ଗଠିଟି ପାଇ ଆତୁର ହୋଇ ପଡ଼ିଥିଲେ, ତାହା ଗୋଟିଏ ଜାଲ୍ ଗଠି ମାତ୍ର । ସେ ଯେଉଁ ମୁକୁରରେ ଜଗତର ଏକ ଛବିଳ ବିନ୍ୟାସର କଳ୍ପନା କରି ଯାଇଥିଲେ, ତାହା ଗୋଟିଏ ସାଧାରଣ କାଚ, ଯହିଁରେ ପ୍ରତିଛବି ବିକଳାଙ୍ଗ ହୁଏ ସିନା—ସିଧା ସଳଖ ଦେଖାଯାଏ ନାହିଁ । ପ୍ରତିକାର ?

ବୈଜ୍ଞାନିକ ଆଜ ଲୋଡ଼େ ଏକ ନୂତନ ଚେତନା, ଏକ ନୂତନ ଉଦାସ ଭାବ—ଯିଏ ବିଜ୍ଞାନକୁ ବ୍ୟକ୍ତି ଆଉ ଅନୁଷ୍ଠାନର ଖିଆଲ ବନ୍ଧନର ଇନ୍ଦ୍ରଜିତ ନାଗଫାଶରୁ ମୁକୁଳାଇ ପାରିବ । ବିଜ୍ଞାନ ଲୋଡ଼େ ଏକ ବିଶ୍ୱସ୍ତ ସୌମିତ୍ରି । ତା'ର ନାମ ଭ୍ରାତୃତ୍ୱ; ତା'ର ନାମ ଗଣତାନ୍ତ୍ରିକ ସମାଜବାଦ; ତା'ର ନାମ—ସହ ଅବସ୍ଥାନ ।

---

# ଭାବବାଦ ନା ବସ୍ତୁବାଦ

ଆଜି ପୁରୁଣା ମଦକୁ ନୂଆ ବୋତଲରେ ଥୋଇ ଜଗତ ଆଗରେ ବଢ଼ା ଯାଉଛି । ସେ ପ୍ରଶ୍ନଟି ହେଉଛି ଜୀବନ କଅଣ ?

ଏହା ହୁଏତ ଦୁଇ ମହାକାଳ ମଧ୍ୟରେ ଏକ ତୀର୍ଥଯାତ୍ରା ପଥ । ବୁନଆନ ଧର୍ମବୃଦ୍ଧିଜରେ ପିଲଗ୍ରିମ୍ ପ୍ରଗ୍ରେସରେ ଏଇ କଥା କହି-ଥିଲେ । ରବିନସନ କ୍ରୁସୋରେ ଅର୍ଥନୈତିକ କ୍ଷେତ୍ରରେ ଏଇ ପ୍ରଶ୍ନ ବିଶ୍ଳେର ହୋଇଥିଲା । ଗଲିଭରସ ଟ୍ରାଭେଲସରେ ପ୍ରଜ୍ଞା ବା ଚିନ୍ତା ରାଜ୍ୟରେ ଇଆର ସମାଧାନ ହୋଇଥିଲା । ନା—ସେ ଧାରଣା ହୁଏତ ସତ ନୁହେଁ । ହୁଏତ ଜୀବନ ଗୋଟିଏ ରେଳଯାତ୍ରା ସମ-- ଯେମିତି ପାଟ୍ରିକ କେଆର ତାଙ୍କର "ଫାଷ୍ଟର ଫାଷ୍ଟର" ବହିରେ କହିଲେ । ପୁଣି ତାର ନୂଆ ରୂପକ ଆକାରରେ ନୂଆ ଧାରଣା ବି ଆସିଲା । ଜୀବନ ସତେ ଅବା ଗୋଟିଏ ରେଳ ଜଙ୍କସନ ପର ଯେମିତି ଜନ ଡସ ପୋସସଙ୍କ ମାନହାଟାନ ଟ୍ରାନସଫରର ଛବି ।

ଆଧୁନିକ ଯୁଗରେ ସେଇ ପ୍ରଶ୍ନ ବିଜ୍ଞାନ ଉଠାଇଲା ନୂଆ ଢଙ୍ଗରେ । କଣ ଏଇ ଜୀବନ !

ଡାରଉଇନବାଦ ପ୍ରଥମେ ପ୍ରମାଣ କଲା ଯେ ଯେଉଁମାନେ ସାହସୀ, ଯୋଦ୍ଧା ଆଉ ଯୋଗ୍ୟ ସେହିମାନେ ବଞ୍ଚି ରହିବାର ଦାବୀକୁ ସ୍ୱୀକୃତ କରାଇ ନିଅନ୍ତି । ଯୋଗ୍ୟତମର ଉଜ୍ଜୀବନ ବା ପ୍ରାକୃତିକ ମନୋନୟନ ପ୍ରଣାଳୀହିଁ ସକଳ ଅଭ୍ୟୁଥାନ ଗାଥାର

ଇତିବୃତ୍ତି । ଏଇ ପରିବର୍ତ୍ତନ ଶୀଳ ପାରିପାର୍ଶ୍ୱିକ ଅବସ୍ଥା ଜୀବ ମଧ୍ୟରେ ନିରନ୍ତର ପରିବର୍ତ୍ତନ ସଙ୍ଘଟିତ କରାଏ । କିନ୍ତୁ ପରିବର୍ତ୍ତନହିଁ ଏକାନ୍ତ ଅସହାୟ ଭାବେ chance ବା ଭାଗ୍ୟର କରଣୀ । ଭାଗ୍ୟରୂପୀ ନିରହରି ଏଇପରି ଏକ ଅଦୃଶ୍ୟ ରଜ୍ଜୁ ଦ୍ୱାରା ଜୀବନର ମୃଗୀକୁ ଅହରହ ନଚାଉଛି । ସେଥିରୁ ରକ୍ଷା ନାହିଁ ।

ପୁଣି ବିଜ୍ଞାନର ଅତି ଆଧୁନିକ ତତ୍ତ୍ୱଗୁଡ଼ିକ ପଢ଼ିଲେ ଜଣା ପଡ଼େ ଯେମିତି ଏଇ ଜୀବନ ଅତି ଅସହାୟଭାବେ ତାତ୍ପର୍ଯ୍ୟହୀନ । ଦିନେ ଆମର ଏଇ ସୁନ୍ଦର ସୂର୍ଯ୍ୟ ବୃଦ୍ଧ ହୋଇଯିବ । ପୃଥିବୀ ପୃଷ୍ଠର ଜୀବନର ସତ୍ତା ଲୁଚି ଯିବ । ଜୀବନ ସତେ ଅବା ଏକ ଦୁର୍ଘଟଣା ଖାଲି ! ପୃଥିବୀର ଅତି ଉଷ୍ଣ ଆଉ ଅତି ଶୀତଳ ଦୁଇ ଅବସ୍ଥାରେ ଏକ ସଙ୍କ୍ରୋନ୍ତିକ ମାତ୍ର । ନିରବଚ୍ଛିନ୍ନ ଭାବେ ବିଶ୍ୱରେ ଶକ୍ତିର (energy) ସାମ୍ୟବାଦ ସ୍ଥାପିତ ହେଉଛି । ଏହାହିଁ ଥର୍ମୋଡାଇନ୍‌-ମିକ୍‌ସର ଦ୍ୱିତୀୟ ନିୟମର ଅନୁସିଦ୍ଧାନ୍ତ । ଫଳରେ ଧରାବକ୍ଷରୁ ସମସ୍ତ ବୈଷମ୍ୟ କ୍ରମେ ଲୁପ୍ତ ହୋଇ ଯାଉଛି । ତହିଁରେ ଜୀବନର ଗଠନ ଓ ପ୍ରଣାଳୀ ଗୋଟିଏ କ୍ଷୁଦ୍ର ବ୍ୟତିକ୍ରମ ମାତ୍ର ।

ତା ସାଙ୍ଗକୁ ଆସିଛି ନବବ୍ରହ୍ମାଣ୍ଡର ଚିତ୍ର । ପୁରାତନ କାର୍ଯ୍ୟ କାରଣର ଧାରଣା ଆଉ ନାହିଁ । ସବୁ ଖାଲି କ୍ୱାଣ୍ଟମ ଥିଓରିର ଧାରା ଭଙ୍ଗ । ଘଟଣା ସହିତ ଘଟଣାର ସମ୍ପର୍କ ନାହିଁ । ଏ ବିଶ୍ୱ ଚିନ୍ତନ ଯୋଗ୍ୟ ନୁହେଁ; ଅନାଦି ନୁହେଁ, ଅସୀମ ନୁହେ କାଳ ବି ଅଳୀକ, ଆଉ ଆପେକ୍ଷିକ, ଏହା ଆଉ ପରିବର୍ତ୍ତନର ମାପକାଠି ନୁହେଁ । spacetime continuum ର ଏକ ଜ୍ୟାମିତିକ ଗତି ମାତ୍ର । ଏଠି ଅତୀତ, ବର୍ତ୍ତମାନ, ଭବିଷ୍ୟତ ରୂପକ କୌଣସି ନିର୍ଦ୍ଦିଷ୍ଟ ବିଭାଗ ନାହିଁ ।

ବସ୍ତୁର ସ୍ମୃତି (memory) ଅଛି, ଯେପରି magnetic hysterisis । ଏହାକୁ ଜଡ଼ ଜଗତର conditioned reflex କୁହାଯାଇପାରେ । ପୁଣି ବସ୍ତୁର ସ୍ୱାଧୀନ ଇଚ୍ଛା free will) ବି ଅଛି । ଯେମିତି ଇଲେକ୍ଟ୍ରନ୍‌ର ଅଣୁର ପତନ । ହାଇଜେନବର୍ଗଙ୍କ ନିୟମ ଅନୁସାରେ ଏହାକୁ ଦେଖିହେବ ନାହିଁ । କାରଣ ଠିକରୂପେ ଦେଖିବାକୁ ଗଲେ ଏହାର ପ୍ରକୃତି ବଦଳିଯିବ । ଏଠି ସବୁ ଯେମିତି ଏକ ନିଚ୍ଛକ ମାୟାବାଦ ।

ତା ହେଲେ ଧାରା ଆଉ ନିଶ୍ଚିତତା ବୋଲି କିଛି ରହିଲା ନାହିଁ । ବିଜ୍ଞାନ ପୃଥିବୀ ବିଷୟରେ ପ୍ରଥମେ ଯେଉଁ ମୂଳ ଧାରଣା ଦେଇଥିଲା ତାହା ତାଆସର ଅଟ୍ଟାଳିକ ପରି ଭାଙ୍ଗିଗଲା । ମାନବର ଚିନ୍ତା ରାଇଜରେ ଖାଲି ରହିଲା ଏକ ଅନିଶ୍ଚିତତା ଆଉ ଅବୋଧତା । ମଧ୍ୟଯୁଗର ତମିସ୍ରିତ ଅଜ୍ଞତା ମଧ୍ୟରେ ବିଜ୍ଞାନର ପାଞ୍ଚଜନ୍ୟ ଶଙ୍ଖ ପ୍ରଥମେ ଯେଉଁ ଆଶା ଆଉ ଆଲୋକର ବାଣୀ ଆଣିଥିଲା ତାହା ସବୁ ଯେମିତି କାହିଁ ଲିଭି କିଭି ଗଲା । ଆଜି ପୃଥିବୀଟା ଯେମିତି ଜେଗଦଲିତ Shellyର Witch of Atlas ଭଣକୁହେଲୀ, ଯେମିତି ଥିଲା ମଧ୍ୟଯୁଗରେ; ଠିକ୍ ସେଇମିତି । ଚିନ୍ତା ରାଇଜରେ ଯୁଗର ମୁଖ୍ୟ ସମସ୍ୟାରୂପେ ପୁଣି ଫେରି ଆସିଛି ସେଇ ଆଲକତା ଆଉ ଅନାତ୍ମତାର ଚିନ୍ତା, ଯାହା ଥିଲା ଦିନେ ହିନ୍ଦୁ ଦାର୍ଶନିକ ଗଣର ।

ତା ସାଙ୍ଗକୁ ବିଜ୍ଞାନ ପ୍ରଥମ କରି ପ୍ରସ୍ତୁତ କଲା ନୂଆ ଭୟ, ଯାହା ଆଗରୁ ନ ଥିଲା, ତାହା ହେଉଛି "ମଣିଷ ପ୍ରତି ଭୟ ।" ପୁରାତନ ସଭ୍ୟତାରେ ମଣିଷ ପ୍ରକୃତି କୋଳରେ କ୍ରୀଡ଼ାପୁତ୍ତଳିକା ଥିଲା । ନିଜର ଅସହାୟତାରୁ ଆଧ୍ୟାତ୍ମିକତା ମାଧ୍ୟମ ଦେଇ ତିଆରି

କଣଥିଲ ଭଗବାନ ଆଉ anthropomorphism; ଯାହା କ୍ରୁସେଡ୍ (Crusade) ଓ ସଂସ୍କାର (reformation) ଆନ୍ଦୋଳନ ପର୍ଯ୍ୟନ୍ତ ବଳବତ୍ତର ରହିଲା। ମଧ୍ୟଯୁଗରେ ପରିଶ୍ରମ କାତରତାରୁ ସୃଷ୍ଟିକଲା ସାମନ୍ତବାଦ। ବୁର୍ଜୋୟା ସମାଜ ଦାରିଦ୍ର୍ୟ ଆଉ ସମ୍ପତ୍ତିର ଭୟରୁ ଶିଳ୍ପବିପ୍ଳବ ମାଧ୍ୟମ ଦେଇ ଗଢ଼ିଥିଲା ଏକଛତ୍ରବାଦ। ପୁଣି ଯନ୍ତ୍ରର ଭୟରୁ ଅର୍ଥନୈତିକ ବୈଷମ୍ୟ ଯୋଗେ ଆସିଲା ସାମ୍ୟବାଦ ଆଉ ଶ୍ରେଣୀଯୁଦ୍ଧ। କିନ୍ତୁ ଏ ଯୁଗରେ ଆସିଲା ନୂଆ ଭୟ—ମଣିଷର ମଣିଷ ପ୍ରତି ଭୟ। ଫଳରେ ଆସିଲା ସମରପ୍ରବଣତା, ସାମରିକ ବୋଝ, ମାରଣାସ୍ତ୍ର ନିର୍ମାଣ କୌଶଳ; ଅପରାଧବୋଧ ଆଉ ମୃତ୍ୟୁବାସନା। ସମାଜର ପ୍ରତି ସ୍ତରରେ ଆସିଲା ଭୟ ଆଉ ବିଭୀଷିକା—ପ୍ରେମର ବିଭୀଷିକା—ପରିଶେଷରେ ବିଜ୍ଞାନର ବିଭୀଷିକା। ସତରେ ଏ ଯୁଗରେ ଆସିଲା ସାହସୀ ଆଉ ନୂତନ ପୃଥିବୀର ଛବି।

ପୁଣି ଏଇ ସାହସୀ ଆଉ ନୂତନ ପୃଥିବୀରେ ଆସ୍ତେ ଆସ୍ତେ ବିଜ୍ଞାନର ପିଣ୍ଡରେ ଚଳିଲା ଏକ ଗହନ ଦ୍ୱୈତବାଦ। ଜୀବର ବିବର୍ତ୍ତନ ଧାରାର ଅଗ୍ରଗତିରେ ଏଇ କଥାଇ ପ୍ରକାଶ ପାଇଲା। ସୃଷ୍ଟିର ଆଦିମ ପ୍ରଭାତରେ ଉଦ୍ଭିଦ ଓ ପ୍ରାଣୀ ଅବା ଜଡ଼ ଓ ଜୀବ ମଧ୍ୟରେ ପ୍ରଭେଦ ନ ଥିଲା; ଯେମିତି Dinoflagellates ଓ Virus ଇତ୍ୟାଦି। ଏକକୋଷ ବିଶିଷ୍ଟ ଏହି ଜୀବଗୁଡ଼ିକ ଆପେ ଆପେ ବଂଶ ବୃଦ୍ଧି କରନ୍ତି। ଏଗୁଡ଼ିକ ଅମର। ପରିର ବିବର୍ତ୍ତନର ସୋପାନରେ sexual generationର ଆବିର୍ଭାବ ଫଳରେ ବ୍ୟଷ୍ଟିର "ଜନ୍ମ ଓ ମରଣ" ଏଇ ଦୁଇକଥା ସମ୍ଭବ ପାରିଲା। ବିବର୍ତ୍ତନକୁ ପ୍ରଗତି ପଥରେ ଆଗେଇ ନେବାପାଇଁ ଏଇ ଜନ୍ମ ମରଣ

ଦୁଇକଥା ନିହାତି ଆବଶ୍ୟକ ଓ ଅପରିହାର୍ଯ୍ୟ ଥିଲା । ଏହିପରି ଉପାୟରେ ସ୍ଥାନ (space) ଓ କାଳଦ୍ୱାରା ସୀମାବଦ୍ଧ କେତେକ ବ୍ୟକ୍ତି (Individual) ଦ୍ୱାରାହିଁ ଜୈବିକ କ୍ରମବିବର୍ତ୍ତନ ଆଉ ଅଭ୍ୟୁଥାନ ସମ୍ଭବିଲା । ଏହି ବ୍ୟକ୍ତିର କର୍ତ୍ତୃତ୍ୱହିଁ ଜୀବ ଓ ଜଡ଼ ମଧ୍ୟରେ ଠିଆ କଲା ଭେଦ - ମେଘନାଦ ପ୍ରାଚୀର । ଏହି ଜନ୍ମ ମୃତ୍ୟୁ ଦ୍ୱାରାହିଁ ବିବର୍ତ୍ତିତ ଜଡବସ୍ତୁର ବିବରଣାତ୍ମକ ପରିସୀମା (statistical laws) ଲଙ୍ଘି ମାନବ ସ୍ୱାଧୀନତାର ନିଅଁ ପକାଇଲା ।

କିନ୍ତୁ ପରେ ଆମେ ଦେଖୁ ଯେ ବିଜ୍ଞାନର ଏଇ ଅନ୍ତର୍ନିହିତ ସୀମା ତାକୁ ତା'ର ପରିଣତି ଆଡ଼େ କ୍ରମେ କ୍ରମେ ଟାଣିନେଲା ଯେମିତି । ସମଗ୍ର ମଧ୍ୟଯୁଗରେ (Alchemy) ବା ରସବିଦ୍ୟା ଚର୍ଚ୍ଚାର ମୂଳ ଉଦ୍ଦେଶ୍ୟ ଥିଲା ସ୍ପର୍ଶମଣି (Philosopher stone) ଓ elixir of life ଉଦ୍ଭାବନ କରିବା; ଯାହାଦ୍ୱାରା ମାନବ ଚିର ଯୌବନ ଆଉ ଅମର ହୋଇ ଧରାବକ୍ଷରେ ଶାଶ୍ୱତ ସୁଖ ଲଭିବ । ଏଇ ଭାବର କଥା ଠିକ୍ ଭାବରେ ଦେଖାଯାଏ ଶ୍ରୀ କାହ୍ନୁଚରଣ ମହାନ୍ତିଙ୍କର ନାମଟି ତା'ର ଚମ୍ପା" ପୁସ୍ତକର "ବିଜ୍ଞାନର ବିଜୟ" ଶୀର୍ଷକ ଗଳ୍ପରେ । ପୋ ସଲ୍ଟ୍, କର୍ଣ୍ଣିପିଲ୍, ଉଷ୍ମାନ୍ରେ, ଆଉ ସର୍ବଦର୍ଶୀ ଯନ୍ତ୍ର ଅଧିକାରୀ ମାନବ ହେବ ଅମର । ପଥର ବିଜ୍ଞାନର ଜନ୍ମ ହେବ, ମଣିଷ ପଥର ହେବ, ଅମର ହେବ—ସୃଷ୍ଟି ହେବ, ଧ୍ୱଂସ, କାଷ୍ଟ, କିଛି ନାହିଁ । କାରଣ ଠିକ୍ ଏଇ ଚିନ୍ତାଇ ବିବର୍ତ୍ତନଦ୍ୱାରା ଉଦ୍ଦିଷ୍ଟ ନୁହେଁ । ବିବର୍ତ୍ତନ ଗୁହେଁ ବ୍ୟକ୍ତି, ଜନ୍ମ, ମରଣ ଆଉ ଅଳୀକତା । ଅଥଚ ସମଗ୍ର ବିଜ୍ଞାନ ଆଜ ଯେମିତି ଗୁହେ ମଣିଷକୁ ଚିର ଯୌବନ, ଚିରସୁନ୍ଦର ଉର୍ବଶୀ ରୂପରେ ସଜାଇବାକୁ ଅଥବା

ତା'ର ଅପର ଚରମ ପ୍ରତିକ୍ରିୟାରୂପେ ମାରଣାସ୍ତ୍ର, ବ୍ରହ୍ମାସ୍ତ୍ର, ପାଶୁପତ ଅସ୍ତ୍ର—ଯାହାକୁ ନିକ୍ଷେପ କରି ପୃଥିବୀ ବିଶ୍ୱକୁ ରୁଦ୍ର ତାଣ୍ଡବ ଗତିରେ ନଚେଇବାକୁ ।

ତା'ହେଲେ ବୈଜ୍ଞାନିକର ସମସ୍ୟା କଅଣ ? ଦର୍ଶନର ସମସ୍ୟାଗୁଡ଼ିକୁ ଛୁଇଁଥିବା ଆଧୁନିକ ବିଜ୍ଞାନର ଅନିଶ୍ଚିତତାବାଦ ଓ କ୍ୱାଣ୍ଟମ ମେକାନିକସର ଉଦ୍ଭାବନ ଓ ଆବିଷ୍କାର ସକଳ, ପୁଣି ଏକ ନୂତନ Unified theory ବା ସଙ୍ଗଠିତ ମନନ ଦରକାର କରେ । ଏଇଠି ବୈଜ୍ଞାନିକର କର୍ତ୍ତବ୍ୟ ରହିଛି । ବିଜ୍ଞାନ ପ୍ରଣୋଦିତ ଚିନ୍ତାଧାରା ସମାଜକୁ କି ରୂପ ଯୁଗର ଓ କେଉଁ ଦିଗରେ ପ୍ରଭାବିତ କରୁଛି, ତାହା ଆଜି ସମାଜ ଆଗରେ ବାଢ଼ିବାକୁ ପଡ଼ିବ ବୈଜ୍ଞାନିକକୁ । ନିଉଟନଙ୍କ ସମୟରୁ ବିଜ୍ଞାନ ସମାଜରେ ଗୋଟିଏ କଥା ଉଠିଥିଲା । ତାହା ହେଉଛି ଏଇଆ ଯେ ଉଦ୍ଦେଶ୍ୟ ପରି ଉପାୟ ବି ଏକ ସାଧନାର ବସ୍ତୁ । ବିଜ୍ଞାନର ଭଙ୍ଗୀ ଏପରି ଗୋଟିଏ ଭଙ୍ଗୀ, ଯହିଁରେ ଆତ୍ମସମାଲୋଚନା ଆଉ ଆତ୍ମସମୀକ୍ଷା ଦ୍ୱାରା ସେହି ଭଙ୍ଗୀ ଦୃଢ଼ୀଭୂତ ହୁଏ; ଭାଙ୍ଗିଯାଏ ନାହିଁ । ଏହାର ବାଣୀ ସ୍ୱାଧୀନତା, ସହନଶୀଳତା ଓ କର୍ମପ୍ରେରଣାର ବାଣୀ । ମଣିଷର ବିଭିନ୍ନ ଅନୁଷ୍ଠାନ ଓ ଭାବଧାରା ସକଳ ବିଜ୍ଞାନକୁ ନିୟନ୍ତ୍ରିତ କରି ପାରୁ ନାହିଁ ବୋଲି ଆଜି ଚହଳ ପଡ଼ିଛି । କିନ୍ତୁ ବିଚାରି ଦେଖିଲେ ସମସ୍ୟାଟି ଠିକ ଓଲଟାଇ । ବିଜ୍ଞାନ ଆଜି ଶାସନ, ରାଜନୀତି, ଶାସକଗୋଷ୍ଠୀର ଚିନ୍ତାଧାରାଠାରୁ ବେଶୀ ମାନବିକତା ଭାବଦ୍ୱାରା ପ୍ରଣୋଦିତ । ସୁତରାଂ ଅସଲ ସମସ୍ୟାଟି ହେଉଛି ସମାଜର ବିଭିନ୍ନ ଅଂଶ ଓ ଅନୁଷ୍ଠାନ-ଗୁଡ଼ିକ କିପରି ବିଜ୍ଞାନ ସହ ସମତାଳ ରଖି ମାନବିକତା ଭାବଦ୍ୱାରା ପ୍ରାଣିତ ହେବେ ତାହାହିଁ ।

ଠିକ ଏଇଠାରେ ହିଁ ବୈଜ୍ଞାନିକର ସମସ୍ୟା । ବୈଜ୍ଞାନିକକୁ ଆଜି ନୂତନ ଯାଜକରୂପେ ଏଇ ବାଣୀ ହିଁ ପ୍ରଚାର କରିବାକୁ ପଡ଼ିବ ।

ନିର୍ବାଚନ ପ୍ରକ୍ରିୟାର ପର ତାକୁ ପାଇବାକୁ ପଡ଼ିବ ନୂତନ ଗୀତି-କବିତା । ବିଜ୍ଞାନରୂପୀ ସେଇଲକ ହୋମସ ପ୍ରକୃତିର ଯେଉଁ Opensesame ମନ୍ତ୍ରଟି ହାସଲ କରିଥିଲା ତା'ର ଓଲଟ ମନ୍ତ୍ରଟି ହେଉଛି—ସମାଜର ବିଭିନ୍ନ ଅନୁଷ୍ଠାନଗୁଡ଼ିକ ବିଜ୍ଞାନର ଗତି ସହ ଏକ ଅଭିଯୋଜନା (adaptation) ସ୍ଥାପନ କରିବାରେ । ହରମାନ ହେସର ଉପନ୍ୟାସ 'ସିଦ୍ଧାର୍ଥ'ର ଚରିତ୍ର 'ଗୋବିନ୍ଦ' ଜୀବନଯାକ ଖୋଜି ଖୋଜି ଲକ୍ଷ୍ୟଟି ଭୁଲି ଯାଇଥିଲା । କେବଳ ତା'ର ପଦଚଲାର 'ପଥ'ହିଁ ଦେଖିଥିଲା । ଆଜି ବିଜ୍ଞାନକୁ 'ସିଦ୍ଧାର୍ଥ' ସାଜି ବିଶ୍ୱର ଅଗଣିତ 'ଗୋବିନ୍ଦ'ଙ୍କୁ ଏଇ ନୂତନ ମାନବିକତାର ସ୍ୱରରେ ଦୀକ୍ଷିତ କରାଇବାକୁ ପଡ଼ିବ । ବିଜ୍ଞାନ ପ୍ରଥମେ ଉପାୟସ୍ୱାତନ୍ତ୍ର୍ୟ ହୋଇ ଏକ ସାମାଜିକ ଧାରାରୂପେ ଆତ୍ମପ୍ରକାଶ କରିଥିଲା, କିନ୍ତୁ ଏବେ ଆଜି ବୈଜ୍ଞାନିକଙ୍କୁ ଅନୁଭବ କରିବାକୁ ହେବ ଯେ କେବଳ ଉପାୟସ୍ୱାତନ୍ତ୍ର୍ୟ ନୁହେଁ, ଉଦ୍ଦେଶ୍ୟସ୍ୱାତନ୍ତ୍ର୍ୟ ମଧ୍ୟ ।

ଠିକ ଏଇଠାରେ ବୈଜ୍ଞାନିକର ସମସ୍ୟା । ମେରେ ଶେଲି ଅନେକ ଦିନତଳେ ଏଇ ସାହସୀ ନୂତନ ପୃଥିବୀକୁ ଯେଉଁ ଫ୍ରାଙ୍କିନଷ୍ଟାଇନ ଦେଇ ଯାଇଥିଲେ ତାକୁ ଆଜି ପରିବର୍ତ୍ତିତ କରିବାକୁ ପଡ଼ିବ ବୈଜ୍ଞାନିକଙ୍କୁ । ଚିରକାଳ ମାନବ ଧର୍ମକୁ ଅଜଣା ରାଇଜରେ ବିଜ୍ଞାନ ହିସାବରେ ଦେଖି ଆସିଛି । କିନ୍ତୁ ଆଜି ସେ slogan ବା ମୂର୍ଚ୍ଛନାର ଆଉ ପ୍ରୟୋଜନ ନାହିଁ । ବିଜ୍ଞାନକୁ ଜଣାରାଇଜର ଧର୍ମରୂପେ ପ୍ରତିଷ୍ଠିତ କରି ତା'ର ଅଧିବାସ ତୋଳିବାର ଦାୟିତ୍ୱ ଆଜି ବୈଜ୍ଞାନିକର ।

ସେ ଧର୍ମର ନାମ ବୈଜ୍ଞାନିକ ମାନବିକତା (scientific humanism)

---

# ଇହଧାମ ନା ପରଧାମ

ଏ କଥା କହିଲେ ସତ ହେବ ଯେ, ଆଗାମୀ ଯୁଗର ପ୍ରେମିକ ତା'ର ରମ୍ୟବାଦୀ କଳ୍ପନା ମଧ୍ୟରେ ଜହ୍ନକୁ ଆଉ ଧରି ରଖିପାରିବ ନାହିଁ।

ହୁଏତ ଆଗାମୀଯୁଗର ମାଆମାନେ ସେମାନଙ୍କର "କାହ୍ନୁ" ମାନଙ୍କର ଅଝଟପଣିଆରେ ଅତିଷ୍ଠ ହେଲେ, ଶରଦଶଶୀ ସେମାନଙ୍କର ତକାଳରେ ଖସି ପଡ଼ିବାର ପ୍ରବୋଧ ଓ ଆଶ୍ୱାସନା ଆଉ ଦେଇପାରିବେ ନାହିଁ।

ଦିନେ ଯେଉଁ ଜହ୍ନ ବହୁତ ମାଦକତା, ଉତ୍ସାହ, ଆନନ୍ଦ ଓ ରମ୍ୟବାଦର ଆଧାର ଥିଲା; ଆସିଥିଲା ମାମୁଁ ରୂପରେ, ପ୍ରେମର ସାକ୍ଷୀ ହୋଇ, ମିଳନର ଦୂତିକା ସାଜି; ତାହା କାଳର କୌଣସି ନୂତନ କଲମ୍ବସ୍ ବା ଭସ୍କୋଡ଼ାଗାମାର ଆଖିରେ ଆସିବ ଏକ ନୂତନ ଆବିଷ୍କୃତ ମହାଦେଶ ରୂପେ। କାରଣ ମଣିଷର ଜ୍ଞାନର ପରିସର ଭିତରେ ଜହ୍ନର ପହଞ୍ଚିବା ଆଜି ଆଉ ଅପ୍ରାପ୍ୟ ବସ୍ତୁ ହୋଇ ନାହିଁ।

୧୯୫୭ ଅକ୍ଟୋବର ୪ ତାରିଖ। ସୋଭିଏଟ ମଣିଷ ତିଆରି ପ୍ରଥମ ଚନ୍ଦ୍ର ( ପ୍ରଥମ ସ୍ପୁଟ୍‌ନିକ୍ ) ଅନ୍ତରୀକ୍ଷରେ ପ୍ରଦକ୍ଷିଣ କଲା। ସାରା ଜଗତରେ ସୋଭିଏଟ ଖେଳିଗଲା ଗଭୀର ହର୍ଷ ଆଉ ଉଲ୍ଲାସ। ପକ୍ଷେ ବଡ଼୍

ପକ୍ଷେ ଛୁଡ଼ୁ ଚନ୍ଦ୍ର ରୂପେ—ମଣିଷ ତିଆରି ଚନ୍ଦ୍ର ପ୍ରଥମ କରି ବୁଲିବ ପୃଥିବୀର ଗ୍ରହପଥରେ ।

ତା ପରେ ମଣିଷ ଇତିହାସର ଏଇ ଗୌରବମୟ ପର୍ଯ୍ୟାୟର ନୂତନ ପାବଛ ପଡ଼ ପଡ଼ ଯାଇଛି । ୪।୧୦।୫୭; ୩୧।୧।୫୮; ୧୭।୩।୫୮; ୨୬।୩।୫୮; ୧୫।୫।୫୮; ୨୬।୭।୫୮; ୧୮।୧୨।୫୮ ଓ ୧୭।୨।୫୯ । ଦ୍ଵିତୀୟ ସ୍ପୁଟ୍‌ନିକ, ପ୍ରଥମ ଏକ୍‌ସପ୍ଲୋରର୍‌, ପ୍ରଥମ ଭାଙ୍ଗାର୍ଡ୍‌, ତୃତୀୟ ଏକ୍‌ସପ୍ଲୋରର୍‌, ତୃତୀୟ ସ୍ପୁଟ୍‌ନିକ୍‌, ଚତୁର୍ଥ ଏକ୍‌ସ-ପ୍ଲୋରର୍‌, ଆଟ୍‌ଲସ୍‌, ସାଟେଲାଇଟ ଓ ପରେ ଶେଷରେ ଦ୍ଵିତୀୟ ଭାଙ୍ଗାର୍ଡ୍‌ । କ୍ରମାନୁସାରେ ଏକ ପରେ ଏକ ଉପଗ୍ରହ ଓ କୃତ୍ରିମ ଚନ୍ଦ୍ର ଘୂରିବୁଲିବ ପୃଥିବୀର ଗ୍ରହପଥେ । ଜହ୍ନମାମୁଁର ତାତ୍ପର୍ଯ୍ୟ ଅଙ୍କ ସତେ ଯେମିତି ହଜିଗଲାଣି ।

ଖାଲି ସେତିକରେ ସରିନାହିଁ । ସୋଭିଏଟ ଲୁନିକ୍ ( Mechta Rocket ) ଓ ଆମେରିକାର ଚତୁର୍ଥ ପାଇଓନିଅର ମଣିଷ ତିଆରି କୃତ୍ରିମ ଗ୍ରହ ରୂପେ ପ୍ରଥମଥର ପାଇଁ ଚକାଭଉଁରୀ ଖେଳିଛି । ମଣିଷ ସୃଷ୍ଟି କରିଛି ଧରଣୀ ବା ପୃଥିବୀର ବରାବର । ରବୀନ୍ଦ୍ରନାଥଙ୍କ ସେଇ "ସୁଦୂର ଆହ୍ୱାନ" ମଣିଷ ଜାତିକୁ ଆଜି ଘାରିଛି – ଯାହା ଫଳରେ ତା'ର ସୃଷ୍ଟିକରା ଚନ୍ଦ୍ର ପୃଥିବୀଠାରୁ ସୂର୍ଯ୍ୟର ଏକରିଗୁଣ ଦୂରତା ଭ୍ରମଣ କଲାଣି । ମଙ୍ଗଳ ବା ବୃହସ୍ପତି ଗ୍ରହଠାରୁ ଅଧିକ ବାଟ ଘୂରି ସାରିଲାଣି ।

ତା ହେଲେ କାଲି ଇହଧାମ ତ୍ୟାଗ କଲେ ହୁଏ ତ ଆଉ ମରଣକୁ ବୁଝାଇବ ନାହିଁ । କାଲିର ଇହଧାମ ତ୍ୟାଗୀ ମାନବ ହୁଏ ତ ପ୍ରଥମ ଗ୍ରହାନ୍ତର ପରିବ୍ରାଜକ ରୂପେ ଯୁଗଯୁଗ ଧରି ମାନବ ଇତିହାସରେ ଅମର ଅକ୍ଷରରେ ଲିପିବଦ୍ଧ ହୋଇ ରହିବ । କାଲିର

ମାନବ ବିଜ୍ଞାନର ଗାଣ୍ଡିବ ଧନୁ ଆଉ ଅକ୍ଷୟତୂଣୀର ଧରି ପୃଥ୍ୱୀ କପୂର ଅଭିଯାନରେ ବାହାରି ହୁଏ ତ ରାଜଚକ୍ରବର୍ତ୍ତୀ ହୋଇ ଫେରି ଆସିବ ଚରମ ବିଶ୍ୱ-ରହସ୍ୟର ଉପାଧି ଧରି ।

ଏଇ ଅଭିଯାନ ପଥରେ ସେ ଉଦ୍‌ଘାଟନ କରିବ ସୁଦୂର ସୌରମଣ୍ଡଳର କୋଣ ଅନୁକୋଣ; ସୌରମଣ୍ଡଳକୁ ଧରି ରଖିଥିବା ଛାୟାପଥର ସବୁ ପଦ୍ମକେନ୍ଦ୍ର; ପୁଣି ପୃଥ୍ୱୀର ଦୂରତମ ଗହ୍ୱରରେ ( ୫୦ କୋଟି ଆଲୋକ ବର୍ଷ ଦୂରରେ ) ଭାସି ଯାଉଥିବା ଅଶେଷ ( ପ୍ରାୟ ଦଶକୋଟି ) ନୀହାରିକା (Galaxy. nebulae extragalactic nebulae )ର ପ୍ରକୃତି ରହସ୍ୟ । ଏ ଅଭିଯାନ ଅଶେଷ । କାରଣ ସସୀମ, ଅଥଚ ପରିବର୍ଦ୍ଧମାନ ବିଶ୍ୱ ମଧ୍ୟରେ ଏ ଯେପରି ମାନବର ଶେଷ ମଧ୍ୟରେ ଅଶେଷର ଚିରନ୍ତନ ସନ୍ଧାନ । କାରଣ ସତ ଯେମିତି ଏଇ କାମ ପାଇଁ ପୃଥିବୀ ଆଜି ମଣିଷକୁ ଡାକି ଦେଉଛି ।

କିନ୍ତୁ ଏ ଅଭିଯାନର ପରିଣତି କେଉଁଠି ? ପ୍ରଥମରେ ଚନ୍ଦ୍ର, ଅବା କୌଣସି ପୃଥକ ଗ୍ରହ ଉପଗ୍ରହରୁ ପ୍ରଚୁର ଇଉରାନିୟମ ମିଳିବ ଏହା ଆମର ବାସସ୍ଥଳୀ ଧରଣୀକୁ ଅମାପ ଶକ୍ତି (energy)ରେ ଭରିଦେବ । ଧରଣୀ ଶ୍ୟାମଳା ସୁଜଳା କମନୀୟ ହୋଇ ନୂତନ ପ୍ରଚୁରତାର ଗନ୍ଧରେ ଫୁଟିଉଠିବ ।

ଦ୍ୱିତୀୟରେ ମଣିଷ ସମକ୍ଷରେ ଉଦ୍ଭାସିତ ପରିସ୍ଫୁଟ ହେବ ଜୀବନ (life)ର ବୈଚିତ୍ର୍ୟ ଆଉ ରହସ୍ୟ । ଦୂର ସରଗରେ ଜୀବନ ଅଛି କି ନାହିଁ ?—ଏହା ଏକ ଅତି ପୁରୁଣା ପ୍ରଶ୍ନ । ବାସ୍ତବ ଧର୍ମ ଅର୍ଥାତ୍ ଅଣୁପରମାଣୁ ଗୁଡ଼ିକର ଧର୍ମ ସବୁଠାରେ ସମାନ । ସୁତରାଂ ଜୀବନ ଅନ୍ୟଠି ସମ୍ଭବିଛି—ଏହା ଧରିନେବା ଯୁକ୍ତିଯୁକ୍ତ ହେବ ।

ଗୋଟିଏ ହିସାବରୁ ଦେଖାଯାଇଛି ଯେ ପ୍ରାୟ ଅନ୍ୟ ଦଶକୋଟି ଗ୍ରହରେ ଜୀବନର ସୃଷ୍ଟି ଓ ବିବର୍ତ୍ତନ ହୋଇଛି । କିନ୍ତୁ କ'ଣ ହୋଇଥିବ ସେଇ ଜୀବନର ରୂପ (form), ରେଖ (Substance) ଆଉ ଗୁଣ (quality) ? ଧରିତ୍ରୀର ଜୀବନ ଏକାନ୍ତ ଭାବେ ଅମ୍ଳଜାନ ପ୍ରଧାନ । ଅମ୍ଳଜାନ ବିହୁନେ ଏଠାରେ ଜୀବୀ କ୍ଷଣେ ତିଷ୍ଠିବା ଅସମ୍ଭବ କିନ୍ତୁ ଦୂର ସରଗରେ ହୁଏତ ଏପରି ନୁହେଁ । ଜୀବନ (life)ର ବିବର୍ତ୍ତନ ସମ୍ଭବିଛି, ଯାହା ଅମ୍ଳଜାନ ନୁହେଁ, ଅନ୍ୟ କୌଣସି ମୌଳିକ ଅଣୁପ୍ରଧାନ । ଏହାର ସମ୍ଭାବନାକୁ ଏଡ଼ିଦେଇ ହେବ ନାହିଁ । ଜୀବନ ହୁଏ ତ ଦୂର ସରଗରେ ବିଭିନ୍ନ ରୂପ, ରସ, ଗନ୍ଧ ଶବ୍ଦରେ ନିଜ ସଜାଇ ରଖିଛି । ତାହାର ରେଖ କଳିବାକୁ ପଡ଼ିବ । ଦାର୍ଶନିକ ବର୍ଗସନଙ୍କ Creative Evolution ପୁସ୍ତକରେ ଜୀବନର ଏଇ ବୈଚିତ୍ର୍ୟର ସୂଚନା ରହିଛି । ସୁତରାଂ ଧରାର ଜୀବନ ଆଉ ବିଦେଶୀ ପୃଥିବୀର ଜୀବନ ମଧ୍ୟରେ ହୁଏ ତ ମୌଳିକ ପାର୍ଥକ୍ୟ ପରିଦୃଶ୍ୟ ହୋଇପାରେ ।

ଅଣୁର ସେଇ ଗଠନରେ କି ରହସ୍ୟ ଲୁକ୍କାୟିତ ରହିଛି !! ଗୋଟିଏ କ୍ଲୀବାଣୁର ଚତୁର୍ଦ୍ଦିଗରେ ନିର୍ଦ୍ଦିଷ୍ଟ କକ୍ଷରେ ଛଅଟି ବିଦ୍ୟୁତାଣୁ ରହିଲେ, ତାହା ଅଙ୍ଗାର ଅଣୁରେ ପରିଣତ ହୁଏ । ଏହି ଛଅଟି ବିଦ୍ୟୁତାଣୁର ସଂଯୋଗ ଫଳରେ ସମ୍ଭବେ ଅଙ୍ଗାରର ଶୃଙ୍ଖଳ-ସଂଯୋଗ (Chain-linking) ଓ ଫଳରେ ଜୈବୀଅଣୁର ସୃଷ୍ଟି — ଯାହା ଯୋଗେ ଜୀବନ ସମ୍ଭବିଛି । ଛଅରୁ ଛବିଶ ହେଲେ ତାହା ଲୌହ ଅଣୁରେ ପରିଣତ ହୁଏ— ଯେଉଁଠି କାହାରେ ଆଉ ଗୋଟିଏ ରହସ୍ୟମୟ ଧର୍ମ— ଚୁମ୍ବକ । ଛବିଶରୁ ଛୟାନବେରେ ପରିଣତ ହେଲେ ହୁଏ ଇଉରାନିୟମ ଅଣୁ— ଯେଉଁଠୁ ଆରମ୍ଭ

ହୁଏ ଅନ୍ତର ଜନ ଉଦ୍ଭବ, ଅଣୁର ନୂତନ ଓ ନୂତନ ଶକ୍ତିର ବିକାଶ । ସେହିପରି ହୁଏତ ଦୂର ଗ୍ରହର ପରିବର୍ତ୍ତିତ ପରିସ୍ଥିତିରେ ଅଣୁମାନଙ୍କ ମଧ୍ୟରେ ଅନେକ ନୂତନ ଧର୍ମ ଓ ନୂତନ ଗୁଣ ଦେଖିବାକୁ ମିଳିବ—ଯାହା ଫଳରେ ଜୀବନ ହେବ ଭିନ୍ନ, ନୂଆ ଆଉ ସୁନ୍ଦର ।

ତା'ହେଲେ ଏକଥା ସ୍ୱୀକାର କରିବାକୁ ହେବ ଯେ, ବିଜ୍ଞାନ ଆସନ୍ତା କାଳର ସାହିତ୍ୟର ଦିଗଦ୍ରଷ୍ଟା ଆଉ ଧ୍ରୁବତାରା ରୂପେ ତା'ର ଗତି ନିୟନ୍ତ୍ରଣ କରିବ । ଆସିମଭ୍ ଙ୍କ "ଫ୍ଲାଇଙ୍ଗ ସସର" ବୋଲି ଗୋଟିଏ ପୁସ୍ତକ ଛପିଥିଲେ । ତହିଁରେ ଶୁକ୍ର ଗ୍ରହର ଅଧିବାସୀ-ମାନଙ୍କର ପୃଥିବୀ ଭ୍ରମଣର କାହାଣୀ ବର୍ଣ୍ଣିତ ହୋଇଛି । ଗପଟି ପୂରା କପୋଳକଳ୍ପିତ ହେଲେହେଁ ତାହା ବହୁ ସଂଖ୍ୟାରେ ବିକ୍ରି ହୋଇଥିଲା ଏବଂ ଆମେରିକାର ବିଭିନ୍ନ ପତ୍ରପତ୍ରିକା ଆସିମଭ୍ ଙ୍କର ଅଙ୍କାଚିତ୍ର (diagrams) ଛପିଥିଲେ । ସାହିତ୍ୟର ଏ ଆଭିମୁଖ୍ୟ ପ୍ରତି ଆଜି ପୁରା ନଜର ପଡ଼ି ନାହିଁ । କିନ୍ତୁ ଏତାଦୃଶ ସାହିତ୍ୟ ହିଁ ଭବିଷ୍ୟତରେ ସାମାଜିକ ସମସ୍ୟାର ପରିପୂରକ ଆକାରରେ ଆସିବ ।

ତା'ହେଲେ ବୈଜ୍ଞାନିକର ସମସ୍ୟା କେଉଁଠି ? ଗ୍ରହାନ୍ତର ସଂଯୋଗ ସ୍ଥାପନ ହେଲାପରେ ପୃଥିବୀ ସଭ୍ୟତା, ସଂସ୍କୃତି ଓ ମାନବ (homosapiens)ର ବିବର୍ତ୍ତନର ଦିଗ ସମ୍ପୂର୍ଣ୍ଣ ରୂପେ ପରିବର୍ତ୍ତିତ ହୋଇଯିବ । ଆଗରେ କୁହାଯାଉଥିଲା ଯେ ବିବର୍ତ୍ତନ ଅଜୈବରୁ ଜୈବୀ, ଜୀବରୁ ମନସ୍ତାତ୍ତ୍ୱିକ ; ମନସ୍ତତ୍ତ୍ୱରୁ ଦାର୍ଶନିକ ବିବର୍ତ୍ତନ ଆଡ଼େ ଯାଉଛି । ଶେଷ ସ୍ତରରେ ପରମ୍ପରା ଓ ସଂସ୍କୃତି ହିଁ ତା'ର ପରିବାହକ । ଆଜି ବିବର୍ତ୍ତନର ଏ ଅନୁଶୀଳନ ହୁଏତ ଠିକ୍ ଅବା ଯୁକ୍ତିଯୁକ୍ତ ହେବ

ନାହିଁ । ବିବର୍ତ୍ତନରେ ଆଜ ଏକ ପର୍ଯ୍ୟାୟ ଅନ୍ତ— ଯାହା ଧାଏଁ ଗ୍ରହରୁ ଗ୍ରହଆଡ଼େ, ନୂତନ ଗ୍ରହରୁ ସୌର ମଣ୍ଡଳଆଡ଼େ– ପୃଥିବୀର ଦୂରତମ ଗ୍ରହର ଆଡ଼କୁ । ଏଇ ସ୍ତରରେ ବିଜ୍ଞାନ ହିଁ ତା'ର ପରିବାହକ । ଏ ସ୍ତରରେ ହୁଏତ ସେଇ ପୁରୁଣା ମନୋନୟନ ପ୍ରଣାଳୀ (Natural selection) ଓ ଯୋଗ୍ୟତମର ଉଜ୍ଜୀବନ (survival of the fittest) ପୁଣି କାମ କରିବ । କିନ୍ତୁ ଏ ପ୍ରଣାଳୀ ହେବ ସଂପୂର୍ଣ୍ଣ ନୂଆ ରୂପରେ । ଏଠି ଜୀବନର ବିଭିନ୍ନ ରୂପ, ରେଖ ଓ ଗୁଣ ମଧ୍ୟରେ ହେବ ପ୍ରତିଯୋଗିତା ଏବଂ ଗ୍ରହାନ୍ତରର ସଂସ୍କୃତି ମଧ୍ୟରେ ଗ୍ଲୋବିକ ଘାତ, ପ୍ରତିଘାତ, କ୍ରିୟା, ପ୍ରତିକ୍ରିୟା ଆଉ ସମନ୍ୱୟ । ଏଇ ବୃହତ୍ତର ପରିସର ମଧ୍ୟରେ ଗ୍ଲୋବିକ ଜୀବନଯୁଦ୍ଧ; କାମ କରିବ ମନୋନୟନ ପ୍ରଣାଳୀ । ଫଳରେ ଯେ ଯୋଗ୍ୟତମ ହେବ, ସେ ଉଜ୍ଜୀବିତ ହେବ— କେବଳ ପୃଥିବୀର ନୁହେଁ, ସମଗ୍ର ପୃଥ୍ୱୀ ଆଉ ବିଶ୍ୱର ଅଧୀଶ୍ୱର ରୂପେ ।

ତା' ହେଲେ ବୈଜ୍ଞାନିକକୁ ଆଜଠୁଁ ଏଇ ସମସ୍ୟାର ସମ୍ମୁଖୀନ ହେବାପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ । ଆଜିର ବିଜ୍ଞାନର ସକଳ ଅଗ୍ରଗତି ମଧ୍ୟରେ ଏଇ ସମସ୍ୟାଟି ପ୍ରଚ୍ଛନ୍ନ ଭାବେ, ଅନ୍ତର୍ନିହିତ ଭାବେ ଲୁକ୍କାୟିତ ରହିଛି । ଆଗାମୀ ଯୁଗର ବିବର୍ତ୍ତନର ଦୂତରୂପେ ବୈଜ୍ଞାନିକ ହିଁ ମାନବର ଲକ୍ଷ ଲକ୍ଷ ବରଷର ଆଶା, ଭରସା, ଅଗ୍ରଗତି, ଉନ୍ନତିର ଅନ୍ତିମ ପ୍ରକାଶ ଆଉ ଚରମ ଅଭ୍ୟୁଦୟ ।

ସେଇ ଅଭ୍ୟୁଦୟର ନାମ ସୃଜନଶୀଳ ବିବର୍ତ୍ତନ (Creative evolution) ବା ଅଭିବ୍ୟକ୍ତିବାଦ ।

---

# ଆସନ୍ତା କାଲିର ବିଜ୍ଞାନ

ଏଇ ସହରର ଇଟା, ସିମେଣ୍ଟ୍ ଓ କଂକ୍ରିଟର କାଠ ଡେଇଁ ଚାଲନ୍ତୁ ଟିକିଏ ଦେହ କଷ୍ଟ କରି ଆମ ଦେଶର ସାତ ଲକ୍ଷ ଗାଁ' ଭିତରୁ କୌଣସି ଗୋଟିଏ ଗାଁ ଭିତରକୁ । ସେଠିକି ସ୍ୱୟଂଚାଳିତଯାନ ହୁଏତ ଯିବ ନାହିଁ । ଆଗୁଆ ଡଗର ସାଜି ତା'ର ବାର୍ତ୍ତା ହୁଏତ ପହଞ୍ଚି ପାରିବ ନାହିଁ । ଗାଁ'ରେ ପହଞ୍ଚିଲାବେଳକୁ ଆପଣଙ୍କ ପ୍ୟାଣ୍ଟର ଭାଙ୍ଗ ବୋଧହୁଏ ନଷ୍ଟ ହୋଇ ଯାଇଥିବ । ସେଠି ପ୍ରକୃତିର ମେଳା, ତାଳ ତମାଳ ଛୁରିଅନା ବକୁଳ ଆମ୍ରର କୁଞ୍ଜ । ମହୁ-ମାଛିର ଭିଡ଼ । ଭିଜା ମାଟିର ଗନ୍ଧ । ଘାସ ଫୁଲର ମହକ । ତା ଭିତରେ ଆପଣ ପ୍ରଥମେ ଯେଉଁ ଅର୍ଦ୍ଧବସନ ଭୂଷଣହୀନ, ଚଶପାଠୀ-ହୀନ ଲୋକଟିକୁ ଭେଟିବେ, ତାକୁ ଯଦି ପଚାରିବେ ନିଉୟର୍କ ବା ମସ୍କୋ ସହରର ଗୋଟିଏ ନିଖୁଣ ଛବିର ବର୍ଣ୍ଣନା ବାଢ଼ିବାକୁ, ତେବେ ତା'ଠାରୁ କି ଉତ୍ତର ଆପଣ ଅବା ଆଶା କରିପାରିବେ ।

ମୋର କହିବାର କଥା ଏଇଆ ଯେ, ବିଜ୍ଞାନ ମେଘନାଦ ପାଚେରୀ ଡେଇଁ ସାଧାରଣ ଲୋକ ଆଜି ଆଉ ଜୀବନର ସମ୍ଭୋଗ ଓ ସମ୍ଭାବନାର ବଡ଼ ଦେଉଳରେ ଥିବା ଧନର ଗୁଣ୍ଡୁ ପାଖକୁ ସହଜରେ ପଶି ପାରୁନାହିଁ ଯେମିତି । ସେଠି ସିଂହଦ୍ୱାର ଅଛି । ଉତ୍ତର କବାଟ, ଦକ୍ଷିଣ କବାଟ ଅଛି । ସେଇ ସିଂହଦ୍ୱାରର ଅରୁଣସ୍ତମ୍ଭ ପାଖରେ ଗଣ ବା ସାଧାରଣ ଲୋକ ଯେପରି ଗୋଟିଏ

ଦସ୍ତମସ୍ତ, ଅସହାୟ ଅଛିବ ତୁପଟରେ ଠିଆ ହୋଇ ରହିଛି । ତା' ଭିତରକୁ ପଶି ପାରୁ ନାଇ ମୋଟରୁ । ବିଜ୍ଞାନ ତା' ଚକ୍ଷୁରେ ଏଇ ବସ୍ତୁପୁ । ସେଇ ବିଜ୍ଞାନ ରୂପୀ ଟଙ୍କାଡୋଲା ବଳୀଆର ଭୁଜ ମହାବାହୁଙ୍କ ମାହାତ୍ମ୍ୟ ସେ ଯେମିତି ଭୋଗ କରି ପାରିବ ନାହିଁ । ଅଙ୍ଗେ ନିଭେଇ ଥିଲେ ନିଭେଇଥିବ କେଜ୍ଜି ଯୋଗଜନ୍ମା ବନ୍ଧୁ ମହାନ୍ତ, ସାଲବେଗ ଅବା ଦାସିଆ ବାଉରୀ । ନହେଲେ ବରଷକେ ଥରେ ଆଷାଢ଼ ଶୁକ୍ଳ ଦ୍ୱିତୀୟା ଗୁଣ୍ଡିଚ୍ଚା ଦିନ ପରି ବୈଜ୍ଞାନିକ ଶାସକ-ଗୋଷ୍ଠୀ ଓ ରାଜମାନ୍ତ୍ରିକମାନେ ତାକୁ ଯେତିକି ଚରଣୋଦକ ଦେବେ ସେତିକି । ସେଇ ତା'ର ଏ ଜୀବନର, ଏ ଜନ୍ମର ସାର୍ଥକତା ଆଉ ନିର୍ବାଣ ।

ଆସନ୍ତୁ । ଏଇ ବିଜ୍ଞାନର ବେଢ଼ା ପରିକ୍ରମା କରିବେ । ସେଠି ଆଶ୍ଚର୍ଯ୍ୟ ବହୁତ । ଅପ୍ରତ୍ୟକ୍ଷତା ବେଶି । ସେଠି ଆପଣ ହାତେ ଦେଉଳରେ ବାରହାତ ଦିଅଁ ଦେଖିବେ । ବାଇଶ ପାହାଚରେ ତେତିଶ କୋଟି ଦେବତା ବି ଦେଖିବେ । ସେଠି ଆପଣ ଶୁଣିବେ ଜୀବନର ଉପରଚନାର ଅବିମିଶ୍ର ଅହରହ ମନହରା ମୁରଲୀର ସ୍ୱନ । ପୁଣି ବି ଦେଖିବେ ସୃଷ୍ଟି ଛଡ଼ା ଧ୍ୱଂସର ଷୋଳ ସହସ୍ର ରଜନୀର ରାସକେଳି । କିନ୍ତୁ ସେଇ ସମାରୋହ ଆଉ ଅଦ୍ଭୁତତା ଭିତରେ ଆପଣଙ୍କ ମନରେ ସର୍ବଦା ସେଇ ଗୋଟିଏ ପ୍ରଶ୍ନବାଚକ ଜାଗି ଉଠିବ । ଏଇ ବୈଜ୍ଞାନିକ ପ୍ରଚେଷ୍ଟାର ପ୍ରେରଣା ବା ପ୍ରେରଣା କେଉଁଠି ? ବିଜ୍ଞାନର ନିୟନ୍ତା ଅବା କିଏ ? ଆଉ ଇଆର ଅନ୍ତିମ ପ୍ରତ୍ୟାଶା ବା କଅଣ ?

ପ୍ରଥମ କଥା—ବିଜ୍ଞାନ ବସ୍ତୁ ଜଗତର ସମ୍ପର୍କ ଜାଲର ରହସ୍ୟକୁ ବିବୃତିକୁ ଆଣିଲା । ଅନୁଭୂତିକୁ ରୂପ ଦେଲା । ଭାବ,

ସମବେଦନା ଓ ଇଚ୍ଛାର ତ୍ରିବେଣୀ ସଙ୍ଗମରେ ଯେଉଁ ଅନୁଭୂତି ତା'ର
ବ୍ୟବଚ୍ଛେଦ କରି ତାକୁ ଶୃଙ୍ଖଳିତ ଆଲୋଚନାର ପର୍ଯ୍ୟାୟକୁ ଆଣିଲା ।
ଅନୁଭୂତିକୁ ଦେଖି ତନଖି ପୁଣି ତଉଲି ନୂତନ ଅନୁଭୂତିର ବାଟ
ଫିଟାଇଲା । ଏଇଆକୁ ଆମେ କହୁ ପ୍ରକୃତି ବିରୁଦ୍ଧରେ ସଂଗ୍ରାମ ।

କିନ୍ତୁ ଅସଲରେ ପ୍ରକୃତି ବିରୁଦ୍ଧରେ ସଂଗ୍ରାମଇ ବିଜ୍ଞାନର ମୂଳ
କାମ ନୁହେଁ । କାହା ବିରୁଦ୍ଧରେ ଏଇ ସଂଗ୍ରାମ ? ପ୍ରକୃତି ବି ବଦଳେ ।
ପ୍ରକୃତି ମଧ୍ୟରେ ସନାତନ ବୋଲି କିଛି ନାହିଁ । ତାହା ପରିବର୍ତ୍ତନ,
ଉତ୍ତୀର୍ଣ୍ଣ ନୁହେଁ । ତାହା ଚିର ବହମାନ । ଚିର ପରିବର୍ତ୍ତମାନ ।
ତା'ର ମାପକାଠିକୁ ଆମେ ବିବର୍ତ୍ତନ କହୁ । ବିଜ୍ଞାନ ଏଇ ବିବର୍ତ୍ତନକୁ
ବେଗ ଦିଏ । ଦିଗ ବି ଦିଏ । ସୃଷ୍ଟି ବୋଲି ଯାହାକୁ କହୁଥାଇଁ—ପ୍ରକୃତି
ଓ ପୁରୁଷର ଶାଶ୍ୱତ ରସକେଳି—, ପୁଣି ସ୍ଥିତି ବୋଲି ଯାହାକୁ କହୁ
ସେଇଷ୍ଟ ରସକେଳି ଉପରେ କାଳର କର ସଞ୍ଚାଳନ ତାକୁ ଆଜି
ବିଜ୍ଞାନ ଗୋଟିଏ ନୂଆ ରୂପ ଦେଉଛି ମାତ୍ର । ତାକୁ ସତ୍ୟ କରିଚି,
ଶିବ କରିଚି । ପୁଣି କରିଚି ସୁନ୍ଦର. ଶେଷ ମଧ୍ୟେ ଅଶେଷ ଖୋଜିଚି,
ରୂପ ମଧ୍ୟେ ଅରୂପ ପାଇଚି, ସୀମା ମଧ୍ୟେ ଅସୀମ କୁ ଦେଖିଚି ।
ବିପୁଳା ପୃଥିବୀକୁ ଗୁଣ୍ଠିଚି, ନିରବଧି କାଳକୁ ଚହ୍ନିଚି । ଅଣୁ ମଧ୍ୟରେ
ଖୋଜିଚି ବ୍ରହ୍ମଭେଦ ଜୀବନତତ୍ତ୍ୱ । ପୁଣି ଶୂନ୍ୟ ମଧ୍ୟରେ ସୁଦୂରର
ତାନ ବି ଶୁଣିଚି ।

ତା'ହେଲେ ପ୍ରକୃତିକୁ ଜୟ କରିବା ନୁହେଁ ତାକୁ ବଦଳାଇବା
ମୂଳରେ ରହିଚି ବିଜ୍ଞାନର ପ୍ରତିବେଦନା ବା ପ୍ରେରଣା । ଆନ
ଭାଷାରେ କହିଲେ, ପ୍ରକୃତି ପୁରୁଷର ଲୀଳା ଉପରେ କାଳର
ପ୍ରଭାବକୁ ଏହା ସ୍ୱ ବାଞ୍ଛିତ ଦିଗରେ ବାହିନିଏ । ବିବର୍ତ୍ତନକୁ ନିର୍ଦ୍ଦିଷ୍ଟ
ରୂପଦିଏ, ନିର୍ଦ୍ଦିଷ୍ଟ କାଯ, ଦିଗ ଆଉ ଉଦ୍ଦେଶ୍ୟ ଦିଏ । ଏହାକୁ କହନ୍ତି

ବିଜ୍ଞାନର Eugenics programme । ଏହି ଇଚ୍ଛାହିଁ ହିଁ ବିଜ୍ଞାନର ଇଚ୍ଛାହାର । ଏହି ହେବା (Becoming) ହିଁ ସମଗ୍ର ବୈଜ୍ଞାନିକ ପ୍ରଚେଷ୍ଟାର ଉତ୍ସ ।

ଏଇ ଦୃଷ୍ଟି କୋଣରୁ ବିଜ୍ଞାନର ପ୍ରଚକ୍ଷୁରେ ଦେଖିଲେ ଜଗତ ବିଷୟରେ ସବୁ ଧାରଣା ସ୍ୱଚ୍ଛ ଓ ସହଜ ହୋଇଯାଏ । ଆମର ଜଗତର ଧାରଣା ଅଣୁବିଷୟକ ଧାରଣା ଓ ସୌରମଣ୍ଡଳ ବିଷୟକ ଧାରଣା ମଧ୍ୟରେ ସୀମାବଦ୍ଧ । ଅଣୁ ବା microcosm ମଧ୍ୟରେ ଲୁଚି ରହିଛି ଜୀବନତତ୍ତ୍ୱ । ତା'ର ବିଶେଷ ରୂପ ଦେଖି ନ ଥାଇ କିନ୍ତୁ ଏତିକି ଜାଣିଥାଇଁ ଯେ, ତାହା ଆଉ ଅଜ୍ଞେୟ ନୁହେଁ । ସେ ହେଲା ପାତାଳ ଭେଦ । ତା' ପରେ ପୃଥ୍ୱୀ (space) ବା microcosm ମଧ୍ୟରେ ରହିଛି "ସ୍ୱର୍ଗ"ର କାହାଣୀ । ତାହା ଆଉ ଅଗମ୍ୟ ବା ଅବୋଧ ନୁହେଁ । ଏଇ ସ୍ୱର୍ଗ ଓ ପାତାଳ ମଝିରେ ରହିଛି ମର୍ତ୍ତ୍ୟ—ଆମର ବସୁନ୍ଧରା—ତାହା ଆମର ଚରଣ ଭୂଇଁ । ସେଠି ବଞ୍ଚିବା ତତ୍ତ୍ୱ ଆଉ ମହାତ୍ମ୍ୟ ରହିଛି । ତହିଁର ଆଜି ବହୁ ଭ୍ରାନ୍ତି ଆଉ ପ୍ରମାଦ ତୁଟି ଯାଇଛି । କଳୁଷ, ତମସା ଯେତେକ ଦୂର ହୋଇ ସଫା ଛବିଟିଏ ମିଳିଛି । ପୃଥିବୀର ଅମରତ୍ୱ ବା ନିରବଚ୍ଛିନ୍ନତା (Continuity) ପାଇଁ ଆଜି ଆଉ ଅବତାରବାଦ ବା ଆତ୍ମାର ଦେହାନ୍ତ ଭ୍ରମଣ ଲୋଡ଼ାନାହିଁ । ଜୀବନ ବହୁ ଜାଗାରେ ବିକଚ ଶତଦଳପରି ଅଙ୍କୁରିତ ହେଉଛି । ଜୀବନର ଅନନ୍ତତା ଓ ଅବିନଶ୍ୱରତା ପାଇଁ ଆଜି ବିଶଦ ବିଳାପର ଆବଶ୍ୟକତା ନାହିଁ । କାରଣ ଏଠି ନ ହେଲେ ଜୀବନ ଆନ ପୃଥିବୀରେ ବି ସେଇ ଚମତ୍କାରିତା, ସେଇ ସୌନ୍ଦର୍ଯ୍ୟ ଓ ସେଇ ସମ୍ଭାର ନେଇ ଫୁଟି ଉଠିବ । ସତେ ଯେମିତି ଜୀବନଇ ସତ୍ୟ, ମରଣ ଯେମିତି ଶ୍ୟାମ ନୁହେଁ, ସତ୍ୟ ନୁହେ ଅଳୀକ ମାତ୍ର ।

ତା’ହେଲେ ଆମର ଏଇ ସେରନ୍ଧ୍ରା ମନନଶୀଳ ବିଜ୍ଞାନର ନିଯୃତ୍ତି କଏ ? ଏଇ ପ୍ରଚେଷ୍ଟାର ପରିଣତି କଅଣ ? ସ୍ରୋତସ୍ୱିନୀ ବହିଯାଏ ଜଳଧିରେ ମିଳିବା ପାଇଁ । ଜଳଧିହିଁ ତା’ର ପରିଣତି । ଏଇ ବିଜ୍ଞାନର ଶେଷ କେଉଁଠାରେ ?

ବିଜ୍ଞାନର ଆରମ୍ଭ ମୂଳରେ ଏକଇ ଜିଜ୍ଞାସା—କିପରି ? ଏଇ କିପରି ପ୍ରଶ୍ନରୁ ଆରମ୍ଭ ହୋଇଥିଲା ଧର୍ମ ସଂଶୟ । ପରେ ତାହା ଘନୀଭୂତ ହୋଇ ଧର୍ମ ଅବିଶ୍ୱାସରେ ପହଞ୍ଚିଲା । ସେଠୁ ଉଠିଥିଲା ପ୍ରଶ୍ନ କ୍ଷୀର ସିନ୍ଧୁ ଅଛି କି ନାହିଁ । ଭଗବାନ ସେଠି ଅନନ୍ତଶୟନ କରିଛନ୍ତି କି ନାହିଁ । ତା’ର ଉତ୍ତର ପାଇବାକୁ ଯାଇ “ବ୍ରେଭନିଉ ଓ୍ୱାରଲ୍ଡ” (Brave New world) ରେ ଆମେ ଭଗବାନଙ୍କ ସମକକ୍ଷ ସଇତାନ (Devil)ର ମୂର୍ତ୍ତି ଦେଖିଥିଲୁ । ପରେ “ଏପ ଆଣ୍ଡ ଏସେନ୍‌ସ” (Ape and Essence) ରେ ପୁଣିଥରେ କୁରୁକ୍ଷେତ୍ର ଯୁଦ୍ଧ ଭୂଇଁରେ ଭଗବାନଙ୍କର ଶରଶଯ୍ୟା ଦେଖିଲୁ । ସେଠି ତାଙ୍କର ମାୟା ସୁଦର୍ଶନ ଚକ୍ରର କରଣୀ ଚଳୁନାହିଁ । ଇଆର ପ୍ରମାଣ ବି ପାଇଲୁ । ଏଇପରି ଆନୁଷଙ୍ଗିକ ଚିନ୍ତାରୁ ଜନ୍ମିଥିଲା ଆନ୍ଦୋଳନ । ହୋଇପାରେ, ଭଗବାନ ହୁଏତ ଆଜି ଆଉ ଜୀବିତ ନାହାନ୍ତି, ହୁଏତ ତାଙ୍କର ମୃତ୍ୟୁ ଘଟିଛି ।

ଏ ଆନ୍ଦୋଳନକୁ ଅବସ୍ଥିତିବାଦ, ଏକ୍‌ଜିଷ୍ଟେନ୍‌ସିଆଲିଜମ୍ (Existencialism) କହନ୍ତି । ମଧ୍ୟ ଯୁଗରେ ଭେଲଟାୟାର ଭଗବାନ ଯାହା କରନ୍ତି ମଙ୍ଗଳ ପାଇଁ ନିଜକୁ ସତ୍ତ୍ୱରୁ ବାହାରି ଆସିବା ପାଇଁ ନିଜକୁ ନିୟୋଗ କରିଥିଲେ । ଆଜି ତାଙ୍କର ଉତ୍ତରରେ ଆଧୁନିକ ଯୁଗର ବିଳାପ । ଭଗବାନ ନାହାନ୍ତି ପରା ।

ଏଇ କିପରି ପ୍ରଶ୍ନହିଁ ମଧ୍ୟଯୁଗର ପ୍ରଜ୍ଞାବାଦ (Scholasticism) କୁ ଜନ୍ମ ଦେଇଥିଲା । ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ

ଏଇଆ ତଫାତ ଯେ ପାଶ୍ଚାତ୍ୟ ପରୀକ୍ଷା ପ୍ରଣାଳୀ (Experimental method) ଦ୍ୱାରା ପ୍ରଜ୍ଞାବାଦର କୁଜ୍ଝଟିକାରୁ ବାହାରି ଆସି ପାରିଲା ; କିନ୍ତୁ ପ୍ରାଚ୍ୟ ତା' ପାରିଲା ନାହିଁ । ବୁଦ୍ଧ ଓ ଶଙ୍କରାଚାର୍ଯ୍ୟ ଯେଉଁ ପ୍ରଜ୍ଞାବାଦର ମଞ୍ଜି ପକାଇ ଯାଇଥିଲେ ତାହା ଏ ଦେଶରେ ଅଟୁଟ ରହିଲା । ପ୍ରଜ୍ଞାବାଦ ପରେ ବିଜ୍ଞାନର ସଙ୍ଘାତରେ ପ୍ରାକୃତବାଦ (Naturalism) ଓ ରମ୍ୟବାଦ (Romanticism) ବି ଭାଙ୍ଗିଗଲା । ପ୍ରକୃତିର ସ୍ୱୟଂ ସମ୍ପୂର୍ଣ୍ଣତା ରହିଲା ନାହିଁ ।

ରମ୍ୟବାଦର ବ୍ୟକ୍ତି ସାପେକ୍ଷିକତା (subjectivism) ଓ ଅହଂଭାବ ବି ଠିଆ ହୋଇ ପାରିଲା ନାହିଁ । ତା' ଜାଗାରେ ଦେଖା ଦେଲା ବୈଜ୍ଞାନିକ ବିଳାସ ବା ବୈଜ୍ଞାନିକ ରମ୍ୟବାଦ (scientific romanaticism) ।

ଏଇ ବୈଜ୍ଞାନିକ ରମ୍ୟବାଦ ହିଁ ବିଜ୍ଞାନକୁ ତା'ର ପରିଣତି ଆଡ଼େ ଚଳାଇ ନେଲା । ଅନୁଭୂତିକୁ କେନ୍ଦ୍ର କରି ରହସ୍ୟମୟତା ପ୍ରତି ଉତ୍କଣ୍ଠା, ସୀମା ସରହଦପ୍ରତି ଅସହିଷ୍ଣୁତା, ନୂତନ ବିଧାନର ପରୀକ୍ଷା, ଏସବୁ ବୈଜ୍ଞାନିକ ରମ୍ୟବାଦର ଧର୍ମ । ଏ ଧର୍ମ ଭିତରେ Greek tragedy ବା ସ୍ପେଙ୍ଗଲର (Spengler) ଙ୍କ Destiny-idea ପରି ନିୟତିହିଁ ରହିଛି । ଯାହା ଫଳରେ ଘଟିଛି ବୈଜ୍ଞାନିକ ବିକାଶ । ବିଜ୍ଞାନର ନିୟତି ତା'ର ସହ ଓତଃପ୍ରୋତ ଭାବରେ ଜଡ଼ିତ । ଏଇ ନିୟତିର ପ୍ରଣାଳୀ ଅଛି, ମାଧ୍ୟମ ବି ଅଛି ଆଉ ଅଛି ଏକ ନିର୍ଦ୍ଦିଷ୍ଟ ସ୍ଥିର, ଧ୍ରୁବ ପ୍ରବଣତା ।

ଏଇ ସବୁ ଗହନ ପ୍ରଶ୍ନର ଶେଷ ଉତ୍ତର ବିଜ୍ଞାନଠୁହିଁ ଆସିବ । କପର୍ନିକସଠାରୁ ଆରମ୍ଭକରି ଆଇନ୍‌ଷ୍ଟାଇନ୍‌ଙ୍କରେ ପହଞ୍ଚିବା—ଏହାହିଁ ବିଜ୍ଞାନର ନିୟତି । ଅନ୍ୟ କଥାରେ ଦର୍ଶନ ସ୍ୱହିତ ମିଶି ଯିବାହିଁ ବିଜ୍ଞାନର

ପରିଣତି । ଏଇ ପରିଣତି ଆଡ଼େହିଁ ଆଜ ଆଧୁନିକ ବିଜ୍ଞାନ ଯାନ୍ତ୍ରିକ ଗତିରେ ସତେ ଯେପରି ଅହରହ ଧାବମାନ ।

ଏଇଠୁ ବିଜ୍ଞାନଠାରୁ ଆମର ପ୍ରତ୍ୟାଶା କଅଣ ତା'ର ପ୍ରଶ୍ନ ସ୍ୱତଃ ଆସୁଛି । ଆଗ କାଳରେ ବେଦ ହିଁ ଥିଲା ଯୁଗଯୁଗର ସ୍ତୂପୀକୃତ ଜ୍ଞାନଭଣ୍ଡାର । ଆଜ ବିଜ୍ଞାନ ତା'ର ଆସନ ନେଇଛି । ଏହା ଋକବେଦର ପ୍ରକୃତି ଉପାସନାରେ ପ୍ରକୃତିର ଅବଗୁଣ୍ଠନ ଖୋଲିଛି । ତାକୁ ଗୃହପାଳିତ କରିଛି । ଯଜୁର୍ବେଦର କର୍ମକାଣ୍ଡରେ ଜୀବନକୁ ନୂଆ ଧାରା ଦେଇଛି, ନୂଆ ପ୍ରେରଣା ଯୋଗାଇଛି । ସାମବେଦର ସଙ୍ଗୀତ ତାନରେ ଜୀବନର ଛନ୍ଦ ବଢ଼ାଇଛି । ଜୀବନକୁ ନୂଆ ରାଗିଣୀ ଦେଇଛି । ପୁଣି ଅଥର୍ବ ବେଦର ଶସ୍ତ୍ର ବିଦ୍ୟାରେ ଧରାକୁ ରୁଦ୍ର ଅଗ୍ନି ଭୂମି କରି ତୋଳିଛି । ବିଜ୍ଞାନ ହିଁ ଆସନ୍ତା କାଲିର ବେଦ । ଏଇ ବେଦର ନିୟମ ଅନୁସାରେ ନୂଆ ସୃଷ୍ଟି ହେବ, ବ୍ରହ୍ମାର ସର୍ଜନା ଚାଲିବ । ବିଜ୍ଞାନକୁ ଛାଡ଼ି ସୃଷ୍ଟି ଅବା ସ୍ଥିତିକରି କିଛି ସମ୍ଭବ ନୁହେଁ ।

କିନ୍ତୁ ସ୍ଥିତି ପାଇଁ ବିଜ୍ଞାନକୁ ଗଣଧର୍ମୀ ହବାକୁ ପଡ଼ିବ । ଆମେ ଯୋଡ଼ିଏ ପୁରୁଣ କଥା ଜାଣିଛୁ । ତାହା ସମଗ୍ର ଜାତିକୁ ଏକ ଅଜଣା ବନ୍ଧନର ଡୋରରେ ଜଡ଼ାଇ ରଖିଥିଲା । ଆମର ବୁଢ଼ୀମା କାହାଣୀ ପୁରୁଷ ପୁରୁଷ ଧରି ଆମର ଶୈଶବକୁ ଆଶା, ଉଦ୍ଦୀପନା ଆଉ ଉତ୍ସାହରେ ଭରି ଦେଇଥିଲା । ଏହା ସାଙ୍ଗେ ତୁଳନା କଲାଭଳି ବିଜ୍ଞାନ ଗଣକୁ କଅଣ ଦେଇଛି ?

ଠିକ୍ ଏଇଠାରେ ହିଁ ଗଣର ପ୍ରତ୍ୟାଶା । ଜର୍ଜ ବର୍ଣ୍ଣାଡ୍ ଶ ତାଙ୍କର "ବ୍ୟାକ୍ ଟୁ ମେଥୁଜେଲା" ପୁସ୍ତକର ମୁଖବନ୍ଧରେ ଏଇ କଥାର ଆଲୋଚନା କରିଥିଲେ । ବିଜ୍ଞାନ ମଧ୍ୟରେ କିମ୍ବଦନ୍ତୀ ଅଛି, ପୁଣି

ଗାରେଡ଼ ଅଛି, ପ୍ରତିମା ପୂଜା ବି ଅଛି। କିନ୍ତୁ "ଆର୍ଚିମେଡ଼ିଜ" ସ୍ନାନ କୁଣ୍ଡରୁ ଉଲଗ୍ନ ହୋଇ "ପାଇଲି ପାଇଲି" (Eureka) ଚିତ୍କାର କରି ସିରାକଟ (syracurts)ର ରାସ୍ତାରେ ଧାଇଁ ଯାଇଥିଲେକି ନାହିଁ ଏଇ କଥାର ସତ୍ୟତା ଉପରେ ବସ୍ତୁର ଆପେକ୍ଷିକ ଗୁରୁତା (specific gravity) ଧର୍ମର ସତ୍ୟତା ନିର୍ଭର କରେ ନାହିଁ କିମ୍ବା ନିଉଟନ ତାଙ୍କର ଜୀବନକାଳ ମଧ୍ୟରେ ଉଦ୍ୟାନରେ ବସିଥିଲେ କି ନାହିଁ, ଏଇ କଥାର ପ୍ରମାଣ ଉପରେ ମାଧ୍ୟାକର୍ଷଣର ସତ୍ୟତା ନିର୍ଭର କରେ ନାହିଁ। କାରଣ ବିଜ୍ଞାନର ଆବିଷ୍କାର ଓ ଉଦ୍ଭାବନ ସକଳ ଅନୁଭୂତି ସମ୍ମତ। କିନ୍ତୁ ଆଜି ଅଗ୍ରଗତିର ଶିଖର ଦେଶରେ ଥାଇଁ ଉନ୍ନତିର ଚୂଡ଼ା ଛୁଇଁ ବିଜ୍ଞାନଗଣର ସାଧାରଣ ଅନୁଭୂତିଠୁ ଯେମିତି ଶନୈଃ ଶନୈଃ ଦୂରେଇ ଯାଉଛି। ତା'ର ସାଙ୍କେତିକ ଭାଷା ସାଧାରଣପାଇଁ ଅତି ଚାପନ ଆଉ ଦୁର୍ବୋଧ। ଗଣ ଆଖିରେ ବିଜ୍ଞାନ ଆଜି ଏକ ବିସ୍ମୟ। ଠିକ୍ ଯେମିତିଥିଲା ମଧ୍ୟ ଯୁଗରେ ଧର୍ମର ଆସନ।

ଏଇଠାରେ ବୈଜ୍ଞାନିକର ସମସ୍ୟା। ଗଣପାଇଁ ବିଜ୍ଞାନର ସଙ୍କେତ ଓ ତାତ୍ପର୍ଯ୍ୟଗୁଡ଼ିକ ସହଜ ଓ ବୋଧଗମ୍ୟ ହେବା ଉଚିତ। ନ ହେଲେ ବିଜ୍ଞାନକୁ ପୂଜା କରିବୁ ସିନା, ଆପଣାର କରିପାରିବୁ ନାହିଁ।

ବୈଜ୍ଞାନିକକୁ ଏଇ କଥା ଅନୁଭବ କରିବାକୁ ପଡ଼ିବ। ପୁରୁଣା ଶାସନ ପଦ୍ଧତିରେ ଗଣ ଆଖିରେ ଶାସକଥିଲା ଏକ "ଭିନ୍ନଜାତି", ଗଣଠାରୁ ପୃଥକ। ଶାସକଥିଲା ଶୃଙ୍ଖଳା ଓ ନିୟମର କବଚ କୁଣ୍ଡଳ। ବିଜ୍ଞାନ ଶାସନର ପନ୍ଥାକୁ ଦୃଢ଼ କଲା। ପୁଣି ତା'ର ଉର୍ଦ୍ଧ୍ୱକୁ ବି ଉଠିଲା। ରାଜମାତର ବଢ଼ତି କଲା। ତା'ର ସାରଙ୍ଗଧନୁ ସାଜି ତାକୁ ରାଜଚକ୍ରବର୍ତ୍ତୀ କରାଇଲା। ତା'ର ଜର୍ଦ୍ଦ୍ୱ! ବିଜୟଷ୍ଟା ଦେଇ ତାକୁ ଘଣ୍ଟ ବି

ଯୋଡ଼ାଇଲା । ଏଇ ବିଜ୍ଞାନର ଆୟୁଧରେ ସଜ୍ଜିତ ହୋଇ ବୈଜ୍ଞାନିକ ଆଜି ଆସ୍ତେ ଆସ୍ତେ ଏକ ପୃଥକ ଜାତିରେ ପରିଣତ ହବାକୁ ଯାଉଛି । ତା'ର ଗୋତ୍ର ଅଲଗା, ଗଣ ଅଲଗା, ନକ୍ଷତ୍ର ବି ଅଲଗା । ଏହା ଯେପରି ଆଜି ନୁହେଁ ଆସନ୍ତା କାଲିର ବିଜ୍ଞାନପାଇଁ ଆହୁରି ସ୍ପଷ୍ଟ, ଆହୁରି ଉଜ୍ଜ୍ୱଳ, ସୁନ୍ଦର ଓ ସମ୍ପୂର୍ଣ୍ଣ ଭାବେ ପ୍ରଯୁଜ୍ୟ ।

ଏଇଠାରେ ବୈଜ୍ଞାନିକର ସମସ୍ୟା । ଆଜି ଜଗତରେ ଆଉ ନୂଆ ଜାତି ଗଢ଼ିବାରେ ଆବଶ୍ୟକତା ଥିଲାପରି ବୋଧହୁଏ ନାହିଁ । ମଣିଷ ବହୁତ ଜାତି ଅଙ୍ଗେ ନିଭେଇଛି । ଦାସ ବ୍ୟବସ୍ଥା, ସାମନ୍ତ ପ୍ରଥା, ଧନତନ୍ତ୍ର, ସାମ୍ରାଜ୍ୟବାଦ, ସମାଜବାଦ କେତେ କ'ଣ । ଆଜି ଆଉ ଜାତିପତି ଭେଦ ବିକାର ବଢ଼ାଇବାରେ କ'ଣ ଅବା ଯୁକ୍ତି ଥାଇପାରେ ?

ତାହାହେଲେ ଏହାହିଁ ବୈଜ୍ଞାନିକର ସବୁଠାରୁ ଗୁରୁ ସମସ୍ୟା । ତାକୁ ଶିଶୁପାଳ ହବାର ସମସ୍ତ ପଥ ତାକୁ ରୁଦ୍ଧ କରିବାକୁ ପଡ଼ିବ । ତାକୁ ତା'ର ବାଞ୍ଛିତ ପରମକଲ୍ୟାଣମୟ ସୁନ୍ଦର ଜୀବନ ରୂପୀ ରୁକ୍ମିଣୀକୁ ହରଣ କରିବାର କଉଶଳ ବତାଇ ଦେବାକୁ ପଡ଼ିବ । ତାକୁ ଆଜି ଏକ ନୂତନ ସମର ପ୍ରବଣତାରେ ଉଦ୍ଧରିବାକୁ ପଡ଼ିବ ଆମକୁ— ବୈଜ୍ଞାନିକମାନଙ୍କୁ । ଯାହାର ସାହଚର୍ଯ୍ୟରେ ସେ ତା'ର ସଫଳ ଜୀବନର ବାନର କେତନ ଉଡ଼ାଇ ତା'ର ନନ୍ଦିଘୋଷ ରଥରେ ନାଗାଧିରାଜ ଭୁବନଶୋଭିତ ତୁଷାରଧବଳ ହିମାଳୟର ଶିଖରରେ ନିର୍ଭୟରେ ବିଚରଣ କରିପାରିବ । ଆମରି ଦତ୍ତ ଅକ୍ଷୟତୂଣୀର ଧରି ସେ ଯେମିତି ତା'ର ଅଗ୍ରଗତିକୁ ପ୍ରତିହତ କରୁଥିବା ଅକ୍ଷଉଣୀ ଅକ୍ଷଉଣୀ କଉରବ ସେନାକୁ ନିପାତ କରିପାରିବ ଅବଲୀଳାକ୍ରମେ । ଏଇଥିପାଇଁ ଆଜି ବୈଜ୍ଞାନିକକୁ ଜାତିଆଣ ବିକାର ଛାଡ଼ିବାକୁ ପଡ଼ିବ,

ନହେଲେ ଏହା ଗଣଠାରୁ ପୃଥକ ହେଇଯିବ ଆସ୍ତେ ଆସ୍ତେ । ବିଜ୍ଞାନର ଭୃଷ୍ଣାପୂ ନେଶ ସହଜେ ଗଣକୁ ଚମକାଇ ଦେଉଛି । ମନରେ ସୃଷ୍ଟି କରିଛି ଭୂତ ବା ଲମ୍ବୁର କୋକୁଆ ଭୟ । ତାକୁ ଧର୍ମାଭୂତ କରିବାରେ ସାର୍ଥକତା ନାହିଁ । ଏହି ଭୃଷ୍ଣାପୂ ନେଶର ଉନ୍ମେଷ ବନ୍ଦ କରିବାକୁ ପଡ଼ିବ ଚିରନ୍ତନ ପାଇଁ । ନହେଲେ "ଗଣ" ଯେ ଜାଣିବେନି —ସେ ହେବ ଅନଙ୍ଗ । ସୃଷ୍ଟି ବୈଧବ୍ୟଗ୍ରସ୍ତ ହେବ ।

ଆଜି ବିଜ୍ଞାନର ମୁଖରୁ ଆଦିକବିର ଏଇ କରୁଣାର ବାଣୀ ଝଙ୍କାରିବାକୁ ପଡ଼ିବ । ମାନବର ଶତ ଆଶା, ଅଟ୍ଟାଳିକା ଦଧିନଉତି ଉପରେ ଏଇ କରୁଣାର ନେତ ଉଡ଼ାଇବାର ଭାର ଓ ଦାୟିତ୍ୱ ଆଜି ବୈଜ୍ଞାନିକ ହାତରେ । ବିଜ୍ଞାନ ଆଜି "ଗୋଲୋକ ବିହାରୀ" ହବାକୁ ଯାଉଛି ସତ; କିନ୍ତୁ ତାକୁ ପତିତପାବନ କରିବାକୁ ହବ ।

Printed by— K. Brahmachari at Paramarthi Printing Works, Ctc.-1

# ଶୁଦ୍ଧିପତ୍ର

ପୁସ୍ତକରେ ନିମ୍ନଲିଖିତ ମୁଦ୍ରଣ ଜନିତ ତ୍ରୁଟି ପାଇଁ ପାଠକପାଠିକା ମାନଙ୍କଠାରୁ କ୍ଷମା ଗୃହୁଛି ।

| ପୃଷ୍ଠା | ଧାଡ଼ି | ଯାହାଅଛି | ଯାହାହେବ |
|---|---|---|---|
| ୧୫ | ୧୭ | ଗୁଚ୍ଛେଷା | ଗୁଚ୍ଛୈଷା |
| ୧୫ | ୧୩ | ସତ୍ୟତା | ସତ୍ୟ ତା |
| [illegible] | ୨୧ | Wakes | Awakes |
| ୨୧ | ୨୨ | Renaisice | Renaisance |
| ୨୩ | ୧୮ | ଯାଭଲଭ | ପାଭଲଭ |
| ୩୭ | ୧ | ଆର୍ଶୀବାଦ | ଆଶୀବାଦ |
| ୪୧ | ୧୮ | ଏକଜ | ଏକତ୍ୱ |
| ୪୬ | ୨ | Chil | Child |
| ୪୯ | [illegible] | ସ୍ରଷ୍ଟାରେ | ସ୍ରଷ୍ଟାର ଯେଉଁ |
| ୫୫ | ୧ | ବିଜ୍ଞାନ | ବିଜ୍ଞାନର |
| | ୫ | ନିସ୍ବନ | ନିସ୍ୱନ |
| ୫୯ | ୨୧ | Bacillvn | Baccillus |
| ୬୦ | ୨୦ | ଏ | ଓ |
| • | ୨୨ | Ven | Very |
| ୬୪ | ୧ | ଢିନ | ଚିନ |
| ୬୫ | ୧୮ | ପତ୍ରପତ୍ରା | ପତ୍ରପତ୍ରୀ |
| ୬୭ | ୩ | ବିଶ୍ୱରୂପକୁ | ବିଶ୍ୱରୂପକ |
| ୭୧ | ୯ | ଫର୍ଢିନାଣ୍ଡ | ଫର୍ଡ଼ିନାଣ୍ଡ |
| ୭୫ | ୭ | ୯୮୪ | ୧୯୮୪ |
| ୭୮ | ୧୮ | ଆଲକଭା | ଅଲକଭା |
| ୮୨ | ୧୪ | ମସେସ | ମିସେସ୍ |
| | ୨୩ | Humauism | Humanism |
| ୮୬ | ୧୯ | ଦୈବୀ | କୈବୀ |
| ୮୭ | ୮ | 'ଫ୍ଲାଇଙ୍ଗ ସମର | ଫ୍ଲାଇଙ୍ଗ ସସର' |
| ୯୨ | ୨୦ | ବିଶଦ | ବିଷାଦ |

| ୯ | ୩ | ସିରାକଟ (Syracurts) | ସିରାକବ (Syracurb) |
|---|---|---|---|
| | ୧୫ | ବୋଧଗମ୍ୟ | ବୋଧଗମ୍ୟ |
| ୯୭ | ୧୯ | ନାଗାଧିରାଜ | ନଗାଧିରାଜ |
| ୯ | ୧୦ | ଗୋ ଲୋକ ବହାଶ୍ଚ | ଗୋଲକବହାଶ୍ଚ |
| | ୧୨ | ପତିତପାପନ | ପତିତପାବନ |



ଆପଣଙ୍କ ପାଠାଗାର ସମୃଦ୍ଧିଲାଗି କେତୋଟି ଉପାଦେୟ

**ଡକ୍ଟର ଜଗନ୍ନାଥପ୍ରସାଦ ଦାସ**

ମାନସିକ ବ୍ୟାଧି (ଜଂଘେଇ) ଟ୫.୦୦

ଅବଂଧା ଟ୪.୦୦

**ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି,** ଏମ. ଏ. ବି. ଇଡ.

ପିଲଙ୍କ ଚମକକାଙ୍କ କୁଟୀର ଟ୧.୨

ପିଲଙ୍କ ମୁ ମୁ ଟ୧.୨୫

ପିଲଙ୍କ ଅଂଧ ଶାସ୍ତ୍ରକ (ଯନ୍ତ୍ରସ୍ଥ)

**ଶ୍ରୀ ବିନୋଦ ରାଉତରାୟ**

ତାରୁଣ୍ୟ ଟ୧.୫୦

କବ ମୁଁ ଇଂଗାଣୀବ ଟ୧.୨୫

କାଠଘୋଡ଼ା (ଯନ୍ତ୍ରସ୍ଥ

**ଶ୍ରୀ ଲକ୍ଷ୍ମୀଧର ମହାନ୍ତି**

ଫାଦର ସାଇଗିଅସ୍ ଅନୁବାଦ ଟ ୧.୭୫

**ଶ୍ରୀ ରାଇଚରଣ ଦାସ,** ଏମ୍. ଏସ୍. ସି.

ସିରସ୍ତା ଓ ସରସୀ (ଯନ୍ତ୍ରସ୍ଥ)

ଅଭ୍ୟୁଥାନ କଥା (ଯନ୍ତ୍ରସ୍ଥ)

**ମ୍ୟାକ୍ ବୁକସ୍**

**ରଜା ବଗିଚା, କଟକ-୧**

●        ●

ଆମେ ବହୁତ କିଛି ଜାଣିଛୁ । …ସୁତରାଂ ଆମେ ଅସ୍ଥିର । …ଜ୍ଞାନୀର ସୁବର୍ଣ୍ଣଯୁଗ ଅତୀତ [illegible] ଭବିଷ୍ୟତରେ ନାହିଁ । "ବର୍ତ୍ତ[illegible] ହେଉ ଏବଂ [illegible] ଆମେ ନିଶ୍ଚିତ ଭାବେ ଜାଣୁ ଯେ ଆମର ଜୀବନକାଳ ଭିତରେ ଆମେ ସୁବର୍ଣ୍ଣ ଯୁଗରେ ପହଞ୍ଚିବୁ । ତାକୁ ଅବଶ୍ୟ ଅଙ୍ଗରେ ଲଭେଇବୁ । ସୁତରାଂ ଆମେ ଅସ୍ଥିର । ଚଞ୍ଚଳ ଆଉ ବ୍ୟଗ୍ର । ଅଧୈର୍ଯ୍ୟ ଆଉ ଅସନ୍ତୁଷ୍ଟ । କାରଣ ଆମେ ଏଇ ସୁବର୍ଣ୍ଣ ଯୁଗକୁ ଚଞ୍ଚଳ ଅଙ୍ଗରେ ଲଭେଇବା ପାଇଁ ବ୍ୟଗ୍ର । ପୁଣି ଯେହେତୁ ଆମେ ଜାଣିଛୁ ଯେ ଆମ ପକ୍ଷରେ ସବୁ କିଛି ସମ୍ଭବ ଆମ ମନରେ ଲୁଚି ରହିଛି ଏକ ପ୍ରଚ୍ଛନ୍ନ ଅସ୍ପଷ୍ଟ ଆଶଙ୍କା । ହୁଏତ କୌଣସି ଅଘଟଣ ଘଟିପାରେ ଯାହା ଫଳରେ କି ସୁବର୍ଣ୍ଣଯୁଗ ଆମେ ଅଙ୍ଗରେ ଲଭେଇ ପାରିବୁ ନାହିଁ । ଫଳରେ ଏକ ଅତି କଠୋର ଆତ୍ମବିଶ୍ୱାସ ଓ ଆତ୍ମସନ୍ତୋଷ ଆଉ ଏକ ନିଦାରୁଣ ନିଷ୍ଠୁର ଆତ୍ମଗ୍ଲାନି—ଏଇ ଉଭୟହିଁ ଆମ ଭାବନାର ଯୁଗ୍ମ ଅଙ୍ଗ ।

●        ●

